ଶୂଦ୍ରମୁନି ଶାରଳାଦାସଙ୍କ କୃତ

# ମହାଭାରତ

## କର୍ଣ୍ଣ ପର୍ବ



ପ୍ରକାଶକ
ଶ୍ରୀରାଧାରମଣ ପୁସ୍ତକାଳୟ, ନିମଚଉଡ଼ି, କଟକ - ୨

# କର୍ଣ୍ଣପର୍ବର

# ସୂଚିପତ୍ର



କର୍ଣ୍ଣପର୍ବର ସୂଚିପତ୍ର ସମାପ୍ତ



# ମହାଭାରତ

## କର୍ଣ୍ଣ ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାମ୍ ॥

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁଜନନଂ ଲକ୍ଷାଗୃହେ ଦାହନଂ,
ଦ୍ୟୂତେ ଶ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁଯୋଧନାଦ୍ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁପାଣ୍ଡବୈଃ ରଣନଦୀ ଯଜ୍ଞେନ ଧାରେ ହରିଃ ॥

ହେମନ୍ତେ ପ୍ରଥମେ ମାସି ଶୁକ୍ଲପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ॥

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ॥

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର,
ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର,
ଯତ୍ରାଚ୍ୟୁତୋଦାରକଥାପ୍ରସଙ୍ଗଃ ॥

## ଶାରଳା ଦେବୀଙ୍କ ବନ୍ଦନା

ଜୟ ଦୁର୍ଗତି ତାରଣୀ ମାତା ନାରାୟଣୀ
ଜୟ ମାତ ସରସ୍ୱତୀ ବିପଦବାରିଣୀ ।
ଜୟ ଜୟ ଜନନୀ ଗୋ ଭକତ ବତ୍ସଳା
ଜୟ ଜୟ ଗୋ ଜନନୀ ତେଜ ଅନର୍ଗଳା ।
ଜୟ ଜୟ ଜନନୀ ଗୋ ସୁମନ୍ତ ଗାୟତ୍ରି
ଜୟ ମାତ ବରଦେ ଗୋ ଭକ୍ତ କୃପାଦାତ୍ରି ।
ଜୟ ଜୟ ମାତା ତୁ ଗୋ ପ୍ରଳୟ ତାରିଣି
ଶାରଳାଦାସ ତୋ ପାଦେ ସେବକ ଯେ ଭଣି
ଜନମୁ ମୂରୁଖ ମୁହିଁ ନ ପଢ଼ିଲି କିଛି
ଅନୁଗ୍ରହ କର ମୋତେ ଅଭୟା କାମାକ୍ଷୀ ।

## ଭରଦ୍ୱାଜଙ୍କର ଦ୍ରୋଣଙ୍କୁ ଅଭିଶାପ ପ୍ରଦାନ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଶ୍ରୀମହାଭାରତ ଦ୍ରୋଣପର୍ବ ସମାପତି ।
ଭୀଷ୍ମ ଦଶଦିନ ପୁଣି ଦ୍ରୋଣ ପାଞ୍ଚଦିନ
ପଞ୍ଚଦଶ ଦିନ ପରେ କର୍ଣ୍ଣ କଲେ ରଣ ।
ସଞ୍ଜୟ ବୋଇଲେ ରାଜା ଶୁଣ ଧୃତରାଷ୍ଟ୍ର
ଲଭିଲୁ ତୁ ଶତପୁତ୍ର ପାଇ ବହୁ କଷ୍ଟ ।
ଏହି ପୁତ୍ରମାନେ ଉପୁଜିଲେ ଯେତେବେଳେ
ବିଦୁର ପୁତ୍ରଙ୍କୁ ତୋର ଦେଲା ନେଇ କୋଳେ
ଆବର ବୋଇଲା ରାଜା ଶୁଣ ମହାମତି
ଜ୍ୟେଷ୍ଠପୁତ୍ର ହୋଇବ ଏ ତୋର ଚକ୍ରବର୍ତ୍ତୀ ।

ହସ୍ତ ପାଦେ ପଦ୍ମ ଚକ୍ର ଅଛଇ ଏହାର
ଲକ୍ଷ୍ମୀ ଏହାର କନ୍ଧରେ ଥିବେ ନିରନ୍ତର ।
ପଞ୍ଚମ ଅବତାର ଏ ନାରାୟଣ ମୂର୍ତ୍ତି
ମାନଗୋବିନ୍ଦ ନାମରେ ହେବ ବହୁ ଖ୍ୟାତି ।
କର୍କଶ ମଧୁ ପିଙ୍ଗଳ ହେବ ମହାରାଗୀ
ଅନ୍ୟ ଜନଶତ ରଖି ଯାକୁ ତେଜ ବେଗି ।
ତା ନ କଲେ ତୁମ୍ଭ ତୁମ୍ଭେ ସବୁ ହତଆଶ
ଏହାର ଯୋଗୁ ସକଳ ହୋଇବ ବିନାଶ ।
ସେକାଳେ ବିଦୁର ବୋଲ ନ କରିଲ ଶୁଣି
ଆଉ କି ମଙ୍ଗଳ ହେବ ବିଗୁଣୁଛ ପୁଣି ।
ଭୀଷ୍ମ ଶରଶଯ୍ୟା କଲେ ଦ୍ରୋଣ ଗଲେ ନାଶ
ମହାବୀର ଜୟଦ୍ରଥ ମଲେ ଅଲମ୍ବୁଷ ।
ଶୁଣି ଧୃତରାଷ୍ଟ୍ର ଏହା ପ୍ରକାଶ କରିଲେ
ମୋ କର୍ମକୁ ଯେନି ପୁତ୍ରେ ଅଯଶ ଲଭିଲେ ।
ଭୀଷ୍ମ ଦ୍ରୋଣ ପ୍ରାୟେ ବୀର ପ୍ରାଣେ ହେଲେ ହତ
ଯାହାକୁ ମୁଁ ଅର୍ଘ୍ୟ ଦେଲି ସେହି ହେଲା ଗତ
ସଞ୍ଜୟ ବୋଇଲା ଶୁଣ ରାଜା ଧୃତରାଷ୍ଟ୍ର
ତୁ ଯେ ପଚାରିଲୁ ସେନାପତିଙ୍କର କଷ୍ଟ ।
ଭୀଷ୍ମ ଶରଶଯ୍ୟା କଲେ ପାଣ୍ଡବଙ୍କ ହାତେ
ଦ୍ରୋଣ ଶିର ଛିନ୍ନ ହେଲା ଧୃଷ୍ଟଦ୍ୟୁମ୍ନ ହାତେ ।
ଧୃତରାଷ୍ଟ୍ର ପୁଚ୍ଛାକଲେ ଶୁଣ ହେ ସଞ୍ଜୟ
ଦ୍ରୋଣ କଥା ଶୁଣିବାରୁ ଲାଗିଲା ସନ୍ଦେହ ।
ସଞ୍ଜୟ କହିଲା ଆହେ ଶୁଣ ଧୃତରାଷ୍ଟ୍ର
ପୂର୍ବ ଶାପ ଥିବାରୁ ସେ ହେଲେ ମୁଣ୍ଡକାଟ ।
ରାଜା ବୋଇଲେ କାହାର ଅଟେ ଏଡ଼େ ଶାପ
ଜାଣିଲା ଯେବେ ନ କଲା କପାଁ ସେହୁ ତପ ।
ଆହେ ଧୃତରାଷ୍ଟ୍ର ଭରଦ୍ୱାଜ ଯେ ମହର୍ଷି
ଦ୍ରୋଣ ଗୁରୁ ଅଟନ୍ତି ଯେ ତାହାଙ୍କର ଶିଷି ।
ଯେତେ ଯନ୍ତ୍ର ମନ୍ତ୍ର ଆଦି ବ୍ରହ୍ମ କର୍ମମାନ
ପୁତ୍ରଙ୍କୁ ସକଳ କଥା କରିଲେ ପ୍ରଦାନ ।
ମନ୍ଦର ଋଷିଙ୍କ ଭାର୍ଯ୍ୟା ନାମ ତା ହରିତା
ଏହାର ନନ୍ଦିନୀ ନାମ ହେଲା ସୁରଞ୍ଜିତା ।
ଭରଦ୍ୱାଜ ଋଷି ତାଙ୍କୁ ବିବାହ ହୋଇଲେ
ସମୟରେ ଗୃହବାସ ହରଷେ ସେ କଲେ ।
ସୁରଞ୍ଜିତା ଦ୍ରୋଣଙ୍କର ଜନନୀ ଅଟଇ
ଦେବବଳେ ସେହୁ ଗଲେ ପରଲୋକ ହୋଇ ।
କପିଳ ରାଜାଙ୍କ କନ୍ୟା ନାମ ଅନ୍ତାବେଣି
ତାକୁ ଭରଦ୍ୱାଜ ପୁଣି ବିଭା ହେଲେ ଯାଇ ।
ସେ ଅନନ୍ତା କନ୍ୟା କାଳେ ହେଲା ପୁଷ୍ପବତୀ
ସେ କାଳେ ତୀର୍ଥ ଭ୍ରମଣେ ଯାଇଥିଲେ ଯତି ।
ଗଙ୍ଗା ଗୟା ଗୋଦାବରୀ ପ୍ରୟାଗ କେଦାରେ
ଅଠରମାସ ଭ୍ରମଣ କରିଲେ କ୍ରମରେ ।
ସେ ଅନନ୍ତା ଦ୍ରୋଣଙ୍କର ବୈମାତୃ ଜନନୀ
ଗୃହ ମଧ୍ୟରେ ଏକେନେ ରହିଥିଲେ ବେନି ।
ସେ କପିଳ ରାଜକନ୍ୟା କାମାତୁରା ହୋଇ
ପୁତ୍ରରୂପ ଦେଖି ଆଉ ନ ପାରିଲା ସହି ।
ପୁତ୍ରର ଦେଖିଲା ଯହୁଁ ସେ ଯୁବାବୟସ
କାମସହର ନ ପାରି କଲେ ପରିହାସ ।
ମାତା ଶୟନ ସ୍ଥାନକୁ ଗଲେ ଦ୍ରୋଣ ଗଲେ
କାମବତୀ ନାରୀ ପୁତ୍ର ସଙ୍ଗରେ ମାତିଲେ ।
ପୁତ୍ରସହ ସେ କନ୍ୟାର ହୃଦନ୍ତେ ରଙ୍ଗରସ
ଏମନ୍ତେ ସେ ରାଜକନ୍ୟା ହେଲା ଗର୍ଭବାସ ।
ଯହୁଁ ସାତମାସ ଆସି ହୋଇଲା ଅତୀତ
କ୍ରମେ କ୍ରମେ ଗର୍ଭ ତାର ବଢିଲା ବହୁତ ।
ଏହିକାଳେ ଭରଦ୍ୱାଜ ପଞ୍ଚତୀର୍ଥ ସାରି
ନିଜ କୁଟୀରେ ପ୍ରବେଶ ହେଲେ ଆସିକରି ।
ଦେଖିଲେ ହୋଇଅଛି ସେ କନ୍ୟା ଗର୍ଭବାସ
ତାକୁ ଉପେକ୍ଷି ନ ଗଲେ ଆଉ ତାର ପାଶ ।
ଦ୍ରୋଣକୁ ଡକାଇ ପୁଣି ପୁଚ୍ଛିଲେ କାରଣ
କହରେ ପୁତ୍ର ଏଥିର ସର୍ବ ବିବରଣ ।
ଅନେକ ରୂପେ ପୁଚ୍ଛିଲେ ତାଙ୍କୁ ମହାମୁନି
ସମସ୍ୟା ନ ଦେଇ କିଛି ହୋଇଲେକ ତୁନି ।
ଦିନ ଦୁଇ ଚାରି ଯହୁଁ ହୋଇଲା ଅତୀତ
ଅନ୍ୟ ଶିଷ୍ୟେ ସେ କଥାକୁ କଲେ ପ୍ରକାଶିତ
ଶୁଣି ମହାମୁନି ମନେ ହୋଇ ଅତି ରୋଷ
ଦ୍ରୋଣକୁ ଡକାଇ ପୁଣି ଆଣାଇଲେ ପାଶ ।
ବୋଇଲେକ ପାପାଶୟ ମୋ ପୁତ୍ର ହୋଇଣ
ଅନାନ୍ତା ମାତାକୁ ତୁହି କରିଲୁ ହରଣ ।
ଏବେ ତୋତେ ରେ ପାପିଷ୍ଠ ଦେବି ମୁହିଁ ଶାପ
ଗୁରୁ ଲଙ୍ଘିଲୁ ମୋହର ଦେଲୁ ଏଡ଼େ ତାପ ।
ଜନ୍ମେ ଜନ୍ମେ ତୋର ପତ୍ନୀ ହେଉଥାଉ ନାଶ
ପତ୍ନୀ ସୁଖରେ କଷ୍ଟ ନୋହିବୁ ତୁ ତୋଷ ।

ଏହା କହି ଭରଦ୍ୱାଜ ଲଜ୍ଜିତ ହୋଇଣ
ପୁଣି ତୀର୍ଥକୁ ଚଳିଲେ ଗୃହକୁ ତେଜିଣ ।
ଦ୍ରୋଣ ବୋଇଲେ ପିତୃର ବୟସ ମଧରେ
ମନ୍ଦକାର୍ଯ୍ୟ କରିଅଛୁ ମସ୍ତକର ବାରେ ।
ଏ ପାପପଙ୍କରୁ ମୋତେ ବାରେ ରକ୍ଷାକର
ଏହାକହି ପିତାଙ୍କର ଧରିଲେ ପୟର ।
ଭରଦ୍ୱାଜ ବୋଲେ ଛାଡ଼ ତପୋଧନ ବେଶ
କ୍ଷତ୍ରିୟ ବୃତ୍ତି ଆଚର ସମରରେ ପଶ ।
ଶିରଚ୍ଛେଦ ହୋଇବ ତୋ ରଣଯଜ୍ଞ କର
ମାତାହରଣ ଦୋଷରୁ ତେବେ ହେବୁ ପାର ।
ମହାଭାରତର ଯୁଦ୍ଧେ ତୁ ଯାଇଁ ପଶିବୁ
ଶତେ ଜନ୍ମ ଉତ୍ତରୁ ତୁ ମୁକତ ହୋଇବୁ ।
ପିତାଙ୍କ ବଚନେ ଦ୍ରୋଣ ଛାଡ଼ି ମୁନିବେଶ
ପର୍ଶୁରାମଙ୍କ ନିକଟେ ହୋଇଲେ ପ୍ରବେଶ ।
ତାହାଙ୍କୁ ମଣାଇ ନେଲେ ନାନାଜାତି ଶର
ଗର୍ଭବାସେ ଥାଇ କୃପୀ ଛାଡ଼ିଲେ ଶରୀର ।
ପିତାଙ୍କର ଅଭିଶାପ ପଡ଼ିଲା ତକ୍ଷଣେ
ପେଟଚିରି ପୁତ୍ର କାଢ଼ି ଆଣିଲେ ଯେ ଦ୍ରୋଣେ
ଅଶ୍ୱ ପରାୟେ ଗର୍ଜନ କରନ୍ତେ କୁମର
ତେଣୁ ଅଶ୍ୱତ୍ଥାମା ନାମ ହୋଇଲା ତାହାର ।
ପିତାଙ୍କ ବଚନ ହୃଦେ ରଖିଥାନ୍ତି ଦ୍ରୋଣ
ତେଣୁ ଭାରତ ସମରେ ପଶିଲେ ଯାଇଁଣ ।
ମାତାହରଣେ ଦ୍ରୋଣଙ୍କ ହେଲା ମୁଣ୍ଡକାଟ
ଏତେବେଳେ ତୁମ୍ଭ ପକ୍ଷେ ହେଲା ତା ସଙ୍କଟ ।
ଆହେ ନୃପତି ପୂର୍ବରେ ଯେ ପାପ ଅର୍ଜଇ
ଇହଜନ୍ମରେ ସେ ପ୍ରାଣୀ ନିଶ୍ଚେ ତା ଭୁଞ୍ଜଇ ।
ଆପେ ଯାହା ଅର୍ଜିଥିବ କର୍ମ ବୋଲି ତାକୁ
ବିଧାତା ନିର୍ବନ୍ଧ ନିଶ୍ଚେ ଫଳିବ ତାହାକୁ ।
ଜୟଦେବ ବିଶ୍ୱନାଥ ହେ ପଞ୍ଚମଣ୍ଡଳି
ପରମ ଆନନ୍ଦ ସ୍ୱାମୀ ନମସ୍ତେ କପାଳୀ ।
ସଂସାରର ମଧ୍ୟେ ଦେବ ତୁ ଅଟୁ ଉତ୍ତମ
ଯାହା ନାମ ଧରିଲେ ନ ଦଣ୍ଡେ କାଳଯମ ।
ଶଙ୍ଖ ଲେପନ ପିଙ୍ଗଳ ବର୍ଣ୍ଣ ପଞ୍ଚକଟି
ଲେଙ୍ଗୁଟି ଶର୍କୁଟି ସ୍ୱାମୀ କଟୀରେ କାଛଟି ।
ଅନ୍ଧକ ଅଇସା ଆର୍ତ୍ତିଜନର ଯେ ବନ୍ଧୁ
ଲୋହିତାଙ୍ଗ ପିଙ୍ଗଳ ନାଥ କୃପାଜଳ ସିନ୍ଧୁ ।

ବାଳକ ବୃଦ୍ଧ ତରୁଣ ଯୋଗୀ ଦର୍ପ ଭଞ୍ଜି
ବିଶ୍ୱମ୍ଭର ସ୍ୱାମୀ ପରସନ୍ନ ଦେବରାଜ ।
ଅଜପା ଯୋଗ ମନ୍ତ୍ରରେ ଭଲ ଅଛୁ ଜ୍ଞାନ
ନେତ୍ରାନଳେ କାମଦେବ କରିଛ ଦହନ ।
ଦିବ୍ୟାଙ୍ଗ ସୁନ୍ଦର ନାଥ ସଦା ରଙ୍ଗେ ଭୋଳା
ନବଲକ୍ଷ ଡମ୍ବରୁ ଯେ ବାଜଇ ମେଖଳା ।
ଜଗତ ମୋହନ ଦେବ ସଦା ଅଟ ରାଗୀ
ତୁମ୍ଭେ ଅଟ ଭୋଳାନାଥ ପୁଣି ମହାଯୋଗୀ ।
ଉମାନ୍ତନେ ଦକ୍ଷଯଜ୍ଞ କରିଲ ଦହନ
ଦକ୍ଷମୁଣ୍ଡକାଟି ଦେଲ ଛେଳର ଆନନ ।
ମସ୍ତକରେ ଗଙ୍ଗାଦେବୀ କରନ୍ତି ବିହାର
ଚନ୍ଦ୍ରଶେଖର ବୋଲିଣ ନାମଟି ତୁମ୍ଭର ।
ଜଗତ ବନ୍ଦନ ନାଥ କଣ୍ଠେ କାଳକୂଟ
ଜଗତ ଜୀବନ ନାଥ ନାମ ନୀଳକଣ୍ଠ ।
ସୁଶ୍ରୀଧର ହାର ହୃଦଗତେ ଯାର ଉମା
ଦରଶନେ ମୋ ଦୁରିତ କର ଦେବ କ୍ଷମା
କୌଶିକ ବିବାଦେ ସ୍ୱାମୀ ବ୍ରହ୍ମା ଦର୍ପ ହରି
ପରଶୁଘାତେ କର୍ମିଲ ସର୍ବ ବସୁନ୍ଧରୀ ।
ସମସ୍ତ ପାତକ ଯାଏ ତୁମ୍ଭ ନାମ ଧରି
ବଞ୍ଚିଲି ମୁଁ କାଳଦଣ୍ଡୁ ରୁଦ୍ର ମନ୍ତ୍ର ସ୍ମରି ।
ହେ ଅଭୟ ବରଦାତା ଘେନ ଏ ଜଣାଣ
ଶାରଳାଦାସ ପଶଇ ତୋ ପାଦେ ଶରଣ ।

— ——

## କୁରୁଥାଟରେ କର୍ଣ୍ଣଙ୍କୁ ସେନାପତି ଓ ଶଲ୍ୟଙ୍କୁ ସାରଥି ପଣେ ବରଣ

ପୁନରପି ପଚାରନ୍ତି ବୈବସ୍ୱତ ମନୁ
ମହାଭାରତ କହିବ ମୋତେ ତତ୍ତ୍ୱ ଜ୍ଞାନୁ ।
ପଞ୍ଚଦଶ ଦିବସର ଅନ୍ତରେଣ କଥା
ସଂକ୍ଷେପି କହିବ ମୁନି ତହିଁର ବାରତା ।
କର୍ଣ୍ଣ ପଣ କରେ ମାନଗୋବିନ୍ଦ ଅଗ୍ରତେ
କହିବା ସେ ପର୍ବକଥା ହେବ ଯେଉଁମତେ ।
କହନ୍ତି ଅଗସ୍ତି ଶୁଣ ମନୁ ନରଶ୍ରେଷ୍ଠ
ସଞ୍ଜୟଠାରୁ ଏ ସବୁ ଶୁଣି ଧୃତରାଷ୍ଟ୍ର ।
କର୍ମକୁ ଆନ୍ଦରି ଭିନ୍ନ ହୋଇଣ ରହିଲା
ଦୁର୍ଯ୍ୟୋଧନ ଅର୍ଘ୍ୟ ଘେନି କର୍ଣ୍ଣପାଶେ ଗଲା ।

ବହୁତ ସମ୍ପଦ ନାନା ଅଳଙ୍କାର ନେଇ
ଅର୍ଘ୍ୟସ୍ଥାଳ ଘେନ ତାଙ୍କ ପାଶେ ଉଭାହୋଇ
ବୋଇଲା ହେ ମିତ୍ରବର ଶୁଣ ମୋର ଗିର
ବୃଥାରେ ଅନେକ ସୈନ୍ୟ ପଡ଼ିଲେ ମୋହର
ଇଚ୍ଛାମୃତ୍ୟୁ ଅଟେ ଯେଉଁ ଭୀଷ୍ମ ମହାବାହୁ
ପାଣ୍ଡବ କୂଟରେ ଶରଶଯ୍ୟା କଲେ ସେହୁ ।
କର୍ଣ୍ଣ ନ ପାରିଲେ ମୋତେ ଯହୁଁ ରଣକରି
କୌଶଳେ ସମ୍ପଦ ମୋର ନେଉଛନ୍ତି ହରି ।
ହେତାରୁ ଦ୍ୱାପର ଯୁଗ ଯେହ୍ନେ କଲେ ଶେଷ
ଏମନ୍ତ ଯେ ଦ୍ରୋଣବୀର ସେ ହେଲେ ବିନାଶ
ଭରଦ୍ୱାଜଙ୍କ ନନ୍ଦନ ଅଟନ୍ତି ନିଜୀବୀ
ହସ୍ତେ ଶସ୍ତ୍ର ଥିଲେ କଣି ପାରେ ଦେବ ଭୂବ ।
ଏମନ୍ତ ବୀର ମୋହର କର୍ମ ଅବଳକୁ
ଶତ୍ରୁ କୂଟେ ଗୃଳଗଲେ ଶମନ ଆଳକୁ ।
ଆଉ କି ଯଶ ପାଇବ ସଂଗ୍ରାମ ସାଜିଣ
କୂଟ କୌଶଳେ ଜିଣନ୍ତି ଅଧର୍ମ କରିଣ ।
ମହା ମହା ବୀର ସର୍ବେ ରଣସ୍ଥଳେ ପଡ଼ି
ନିରାଶ କରିଣ ମୋତେ ଏବେ ଗଲେ ଛାଡ଼ି ।
ଶକୁନି ସଚିବ ଶୁଣି ବୋଇଲା ବଚନ
ଯୁଧିଷ୍ଠିର ବିଜେ ଭୀଷ୍ମ ଯୁଦ୍ଧ ଆଦ୍ୟ ଦିନ ।
ଯାନ ବାହନାଦି ତେଜି ଗମନ ପାଦରେ
କମଳର ମାଳ ଥିଲା କେବଳ ହସ୍ତରେ ।
ତା ଦେଖି ବିଚାର କଲୁ ନ ହେବ ସମର
ଶରଣ ମାଗି ଆସିବେ ଏବେ ଯୁଧିଷ୍ଠିର ।
ସଜହୋଇ ତହିଁ ସୈନ୍ୟ ରହିଥିଲେ ଯେତେ
ଶରଣ ପଶିବ ବୋଲି ନିଶସ୍ତ୍ର ସମସ୍ତେ ।
ତହୁଁ ଯୁଧିଷ୍ଠିର ଆସି ଭୀଷ୍ମଙ୍କର ପାଶ
ପ୍ରଣାମ କରିଲେ ଯାଇ ତାଙ୍କ ପାଦଦେଶ ।
ଭୀଷ୍ମ ଆଶୀର୍ବାଦ କଲେ ଆମ୍ଭ ଆୟୁ ନିଅ
ଶତ୍ରୁ ମାରି ନିଶ୍ଚିନ୍ତରେ ରାଜ୍ୟେ ରାଜା ହୁଅ ।
ତାହା ଶୁଣି ଯୁଧିଷ୍ଠିର ବୋଲନ୍ତି ବଚନ
ତୁମ୍ଭଙ୍କୁ ତ ନ ଜିଣିଲେ କାହିଁ ରାଜ୍ୟଧନ ।
ଶାନ୍ତନୁଙ୍କ ବୀର୍ଯ୍ୟେ ଗଙ୍ଗା ଗର୍ଭରୁ ସମ୍ଭୂତ
ପୁଣି ମୃତ୍ୟୁ ତାହାଙ୍କର ଅଟଇ ଆୟତ୍ତ ।
ଏମନ୍ତ ଯାହାଙ୍କ ଶକ୍ତି ଅଟେ ଅପ୍ରମେୟ
ତାହାଙ୍କୁ ସମରେ କିଏ କରିପାରେ ଜୟ ।
ଭୀଷ୍ମ ବୋଇଲେକ ଧଣଦନ ପରସନ୍ନେ
ଯୁଦ୍ଧ କରିବୁ ଉପ୍ରୋଧ ନ କରିଣ ତୋତେ ।
ନବଦିନ ଅନ୍ତେ ତୁହ୍ମେ ଏମନ୍ତ କରିବ
ଶିଖଣ୍ଡୀକୁ ଆଣି ପାର୍ଥ ରଥରେ ରଖିବ ।
ତାକୁ ଦେଖି ଅସ୍ତ୍ର ଆମ୍ଭେ କରିବା ବର୍ଜ୍ଜନ
ତୋହର ଅଭୀଷ୍ଟ ତହୁଁ କରିବୁ ସାଧନ ।
ତାହା ଶୁଣି ଯୁଧିଷ୍ଠିର ହୃଷ୍ଟକଲେ ବୁକ
ତଦପରେ ବାହାରିଲେ ଦ୍ରୋଣ ନିକଟକୁ ।
ଯାଇ ତାଙ୍କ ପାଦତଳେ କରନ୍ତେ ଜୁହାର
କଲ୍ୟାଣ ବାଞ୍ଛିଲେ ବିଦ୍ୟାଲାଭ ହେଉ ତୋର
ପୂରୁ ତୋହର ଅଭୀଷ୍ଟ ଆମ୍ଭ ଆୟୁ ଘେନ
ପଞ୍ଚକଣ୍ଟକରେ ସୁଖେ ହୁଅ ତୁ ରାଜନ ।
ଯୁଧିଷ୍ଠିର ବୋଇଲେ ଶୁଣ ଆହେ ଗୁରୁଦେବ
ତୁମ୍ଭଙ୍କୁ ଜିଣିଲେ ସିନା ଏ କଥା ଫଳିବ ।
ରଣ କରୁଥିବ ଯେବେ ହାତେ ଅସ୍ତ୍ର ଧରି
ନିଜଗତେ କେ ଜିଣିବ ନାହିଁ ନା ଏପରି ।
ଅକାରଣେରେ ଏମନ୍ତ କଲ୍ୟାଣ ବାଞ୍ଛିଲ
ତୁମ୍ଭଙ୍କୁ ତ ନ ଜିଣିଲେ ନାହିଁ ମୋର ଭଲ ।
ତାହା ଶୁଣି ଦ୍ରୋଣଗୁରୁ କରିଲେ ଉକତ
ଯଦ୍ୟପି ଶୁଣିବ ମୁହିଁ ଅଶ୍ୱତ୍ଥାମା ହତ ।
ତେବେ ସେହି କ୍ଷଣି ଅସ୍ତ୍ର ତେଜିବ କରରୁ
ସେହି ସମୟରେ ଯେବେ ମୋତେ ମାରିପାରୁ
ତା ନୋହିଲେ ପୁଣି ଅସ୍ତ୍ର ଧଇଲେ କରରେ
ଆମ୍ଭଙ୍କୁ ଜିଣନ୍ତା ନାହିଁ ଏ ତିନି ପୁରରେ ।
ସେହି କଥା ସବୁ ମନେ ଦୃଢ଼େଥିଲେ ରଖି
କୂଟ କପଟେ ସେକାଳେ ତାହା ଦେଲେ ଯୋଖି
ରଣରେ ତ ଘୋରଯୁଦ୍ଧ ହୋଇଲା ପ୍ରବଳ
ଶର ଆତଯାତ ନଭ ଦିଶିଲା ଉଜ୍ଜ୍ୱଳ ।
ଭୀମସେନ ଅଶ୍ୱତ୍ଥାମା ରଥ ଦ୍ୟନ୍ତେ ଫିଙ୍ଗି
ଯମୁନା ଜଣି ପଡ଼ିଲା ରଥ ଗଲା ଭାଙ୍ଗି ।
ପୁଣ ଭୀମସେନ ମାରେ ଅଶ୍ୱତ୍ଥାମା କରୀ
ଶବ୍ଦହେଲା ଅଶ୍ୱତ୍ଥାମା ରଣେ ଗଲା ମରି ।
ନର କି କୁଞ୍ଜର ବୋଲି ନ ଜାଣିଲେ କିଏ
ଅଶ୍ୱତ୍ଥାମା ହତ ବୋଲି ବୋଇଲେ ସଭିଏଁ ।
ଏ ବାକ୍ୟ ଶୁଣି ନିରାଶ ହେଲେ ରଣ ମଧ୍ୟେ
ଯୁଧିଷ୍ଠିରଙ୍କ ଛାମୁକୁ ଗଲେ ଦ୍ରୋଣ କ୍ରୋଧେ ।

ଦ୍ରୋଣ ପଚାରନ୍ତ ଯୁଧିଷ୍ଠିର ମହାରାଜ
ଅଶ୍ୱତ୍ଥାମା ହତ ହେଲା ମନୁଷ୍ୟ କି ଗଜ ।
ନର ଅଶ୍ୱତ୍ଥାମା ହତ ଯହୁଁ ସେ କହିଲେ
ପୁତ୍ରର ଶୋକରେ ଗୁରୁ ଅସ୍ତ୍ର ଛାଡ଼ିଦେଲେ ।
ପଛଭାଗେ ଧୃଷ୍ଟଦ୍ୟୁମ୍ନ ଛୁରା ହୋଇଥିଲା
ପିତାଶତ୍ରୁ ବୋଲି ତାଙ୍କ ମସ୍ତକ ହାଣିଲା ।
ଶକୁନି ବୋଇଲା ଶୁଣ ହେ କୁରୁରାଜନ
ମୃତ୍ୟୁଭେଦ କହି ଦ୍ରୋଣ ହରାଇଲା ପ୍ରାଣ ।
କର୍ଣ୍ଣଙ୍କୁ କହନ୍ତେ ଧର୍ମ ସେ ନାସ୍ତି କରିଲେ
ଅର୍ଜୁନଙ୍କୁ ମାରିବାକୁ ଦୃଢ଼ପଣ କଲେ ।
ମାନଗୋବିନ୍ଦ ବୋଇଲା ମୋର ମନ୍ଦକର୍ମ
କର୍ଣ୍ଣଙ୍କୁ ଯା ସେନାପତି ନ କଲି ପ୍ରଥମ ।
ହରାଇ ଶିଖିଲି ବୁଦ୍ଧି ତାଙ୍କୁ ଆଶାକରି
ତେଣୁ ହରାଇ ବସିଲି କାର୍ଯ୍ୟକୁ ମୋହର ।
ଏହାକହି ବେଗେ ଉଠି କର୍ଣ୍ଣେ କୋଳକରି
ବୋଇଲା ହେ ମିତ୍ର ରଖ ଏ ମାନ ମୋହର ।
କର୍ଣ୍ଣ ବୋଇଲା ନିଶ୍ଚିନ୍ତେ ଥାଅ ନରରାଜ
ପାଣ୍ଡବେ ମାରିବି ଭୋଗକର ଅଇଶ୍ୱର୍ଯ୍ୟ ।
ପୁଣିହିଁ ମାନଗୋବିନ୍ଦ ବୋଇଲା ବଚନ
ବିଚାର ନ କର ମିତ୍ର କଲି ଏହି କର୍ମ ।
ଅକାରଣେ ଦ୍ରୋଣଙ୍କୁ ମୁଁ ସେନାପତି କଲି
ତୁମ୍ଭଙ୍କୁ ନ କରି ବୁଦ୍ଧି ହରାଇ ବସିଲି ।
କର୍ଣ୍ଣ ବୋଇଲା ମଇତ୍ର କଥା ଏକ କର
ଶଲ୍ୟଙ୍କୁ ସାରଥି କରି ଦିଅ ରଥେ ମୋର ।
ଶୁଣି ସାନନ୍ଦ ହୋଇଲା ରାଜା ଦୁର୍ଯ୍ୟୋଧନ
କର୍ଣ୍ଣଙ୍କୁ ସଙ୍ଗତେ ଘେନି କରିଲା ଗମନ ।
ଅନେକ ରତ୍ନାଳଙ୍କାର ସଙ୍ଗତରେ ନେଇ
ବିଜୟେ ମାନଗୋବିନ୍ଦ ଶଲ୍ୟପାଶେ ଯାଇ ।
ବୋଇଲା ମାମୁ କଥାଏ କହିବି ତୁମ୍ଭଙ୍କୁ
ନାସ୍ତି ନ କରି ପାଳନ କରିବ ତାହାକୁ ।
ତାହା ଶୁଣି ଶଲ୍ୟରାୟେ ଦେଲେକ ଉତ୍ତର
ଆମ୍ଭେ କ୍ଷୁଦ୍ରରାଜା ତୁମ୍ଭେ ପୃଥିବୀ ଠାକୁର ।
ଆମ୍ଭେମାନେ ଚକ୍ଷୁହୀନେ ଅନ୍ଧର ସମାନ
ତୁମ୍ଭେ ଦିବ୍ୟଚକ୍ଷୁ ପ୍ରାପ୍ତ କେ ତୁମ୍ଭଙ୍କ ସମ ।
ଆମ୍ଭେମାନେ ମୂର୍ଖ ସଙ୍ଗେ ଅଟୁ ସମସରି
ତୁମ୍ଭେ ତ ପଣ୍ଡିତ ଶ୍ରେଷ୍ଠ ଯେଣୁ ଦଣ୍ଡଧାରି ।

ଆମ୍ଭେ ସମସ୍ତେ ବଧିର ଅଟୁ ଜଡ଼ା କାଲ
ତୁମ୍ଭର ବଚନ ରାଜା ଅଟେ ବଡ଼ ଶଲ ।
ଆମ୍ଭର ବଚନ ସବୁ ପ୍ରଳାପ ସମାନ
ତୁମ୍ଭର ବଚନ ରାଜା ଦୃଢ଼ ତତ୍ତ୍ୱଜ୍ଞାନ ।
ଆମ୍ଭର ବଚନ ରାଜା ପାଣିରେଖା ପରି
ତୁମ୍ଭବଚନ ପଥର ଗାର ସମସରି ।
ଆମ୍ଭେମାନେ ଅଟୁ ଦେବ ନାନାରୂପ ବ୍ୟାଧି ।
ତୁମ୍ଭେହିଁ ଅଟ କେବଳ ପରମ ଔଷଧି ।
ଯେବଣ କଥା କହିବ ଆହେ ନୃପମଣି
ସେ କଥା ଆନ କରିବ ଅଛୁ କେ ଧରଣୀ ।
ମାନଗୋବିନ୍ଦ କହିଲେ ଶୁଣ ହେ ମାତୁଳ
ସାରଥି ହୋଇଣ ତୁମ୍ଭେ କର୍ଣ୍ଣରଥ ଚଳ ।
ଶୁଣି ଶଲ୍ୟରାୟେ ତହୁଁ କଲେକ ଉତ୍ତର
ସୂତପୁତ୍ରର ସାରଥି ହେବି କି ପ୍ରକାର ।
ମାନଗୋବିନ୍ଦ କହନ୍ତି ମାମୁଁ ତେବେ ଶୁଣ
ସହସ୍ର ବରଷ ବଡ଼ ସୂର୍ଯ୍ୟଠୁଁ ଅରୁଣ ।
ଭାଗ୍ୟବରେ ଅଟନ୍ତି ସେ ପ୍ରଭୁଙ୍କ ସାରଥି
ବେନିଲକ୍ଷ ବର୍ଷ ବଡ଼ ତା ତହୁଁ ଅଟନ୍ତି ।
ସତ୍ୟଯୁଗରେ ଜନମ ଅଟନ୍ତି କେତନ
ସାରଥି ହୋଇ ବହିଲେ ଅଭିମନ୍ୟୁ ଯାନ ।
ଆଉ ଦେଖ ଚନ୍ଦ୍ରରଥ ବାହେ ନିଶାକର
ଚନ୍ଦ୍ରଠାରୁ ପାଞ୍ଚଗୁଣ ବୟସ ତାହାର ।
ଇନ୍ଦ୍ରଙ୍କ ରଥ ସର୍ବଦା ବାହନ୍ତି ମାତଳି
ଇନ୍ଦ୍ରଙ୍କଠାରୁ ସେ ବଡ଼ ଲକ୍ଷେବର୍ଷ ବଳି ।
ହେ ମାତୁଳ ଆଉ କେତେ କହିବି ଏମାନ
ବଡ଼ହୋଇ ସାନ ରଥ କରନ୍ତି ଚାଳନ ।
ସାରଥି ପଣକୁ କିମ୍ପା ତୁଚ୍ଛ ଜ୍ଞାନକର
ଦେଖ ଅର୍ଜୁନ ରଥକୁ ବାହନ୍ତି ଶ୍ରୀଧର ।
ତାଙ୍କଠାରୁ ପୃଥିବୀରେ କେ ବଡ଼ ଅଟନ୍ତି
ଅଶ୍ୱ ଦଉଡ଼ିକି ଧରି ନିଜେ ସେ ବାହନ୍ତି ।
ବିନୟେ ବୋଇଲା ମାମୁଁ ନୁହସି ବିମୁଖ
କର୍ଣ୍ଣର ସାରଥି ହୋଇ ମୋର ବଂଶ ରଖ ।
ଶଲ୍ୟ ବୋଇଲେ ଯଦ୍ୟପି ହେବି ମୁଁ ସାରଥି
ସମର୍ଥ ହେବ କି ଏହି ଅର୍ଜୁନର କତି ।
କର୍ଣ୍ଣ ବୋଇଲା ମାମୁଁ ହେ ତୁମ୍ଭେ କି ନଜାଣ
ମୁଁ କିପରି ବୀର ନିଶ୍ଚେଁ ମାରିବି ଅର୍ଜୁନ ।

କେବଳ ରଥ ବାହିବ ଆନ ନ ବହଇ
ଯେତେବେଳେ ନନ୍ଦିଘୋଷେ ଥିବେ ଭବଗ୍ରାହୀ ।
ହନୁ ବସିଥିବ କପିକେତନ ଧ୍ୱଜରେ
ଅଶ୍ୱ ଶ୍ୱେତ ଯୋଚ୍ଛି ଥିବେ ସୁନ୍ଦର ରୂପରେ ।
ପାର୍ଥ ଧରିଥିବ ଲକ୍ଷ ବଳର ଗାଣ୍ଡୀବ
ବେନି କରରେ ଅକ୍ଷୟ ତୂଣ ଭିଡ଼ିଥିବ ।
ଏମନ୍ତ ବେଳେ ମୋ ରଥ କଲେ ତା ଆଗରେ
କପଟ କରିବ ତାକୁ ଦେଖିବ ନେତ୍ରରେ ।
ଯୁଦ୍ଧ କଲେ ହେ ମାମୁଁ ଦେବି ରତନ ଭଣ୍ଡାର
ସହସ୍ରେକ ଅଶ୍ୱ ଦେବି ଗମନେ ପ୍ରଖର ।
ସହସ୍ରେକ ହସ୍ତୀ ଦେବି ଐରାବତ ଜିଣି
ଦେବି ପଦ୍ମିନୀ ଜାତୀୟା ସହସ୍ରେ ରମଣୀ ।
ସହସ୍ରେକ ଗାଈ ଦେବି ବତ୍ସ ସହିତରେ
ମିତ୍ରପଣେ ବାହା ରଥ ହରଷ ମନରେ ।
କର୍ଣ୍ଣର ଗରବ ଦେଖି ଶଲ୍ୟ ହାସ କରି
ବୋଇଲେ ଯେ ପୋଡୁ ପୋଡୁ ଗରିମା ତୋହରି
ହେ କର୍ଣ୍ଣ ଅଜ୍ଞାନ ପ୍ରାୟ ଭର୍ତ୍ସି କରି ମୋତେ
ଯାହାର ଯେମନ୍ତ ଶକ୍ତି ଜାଣନ୍ତି ଜଗତେ ।
ହସ୍ତୀ କରୁଥାଏ ଠାଣି ବହୁତ ପ୍ରକାରେ
ଯେ ପର୍ଯ୍ୟନ୍ତ ସିଂହରୂପ ନ ଦେଖେ ନେତ୍ରରେ
ସିଂହକୁ ଦେଖିଲେ ଆଉ ବାଟ ନ ମିଳଇ
ତୁହି ମତ୍ତହସ୍ତୀ ସିଂହ କିରୀଟୀ ଅଟଇ ।
ଯେସନେ ମହା ଅନ୍ଧକାର ରାତିରେ ଘୋଟଇ
ମିହିର ଦେଖିଲେ ଆଉ ରହି ନ ପାରଇ ।
ତୁହି ଘୋଟିଅଛୁ ନିଶା ଅନ୍ଧାର ସମାନ
ତୋତେ ଯେ ମଧ୍ୟାହ୍ନ ସୂର୍ଯ୍ୟ ପରାଏ ଅର୍ଜୁନ ।
ଆହେ କର୍ଣ୍ଣ ମୂଷାପ୍ରାୟ ମଣଇ ମୁଁ ତୋତେ
ମାର୍ଜାର ଦେଖିଲେ ଯେସନେ ପଶଇ ସେ ଗାତେ
ତୋହର ପ୍ରତିଜ୍ଞା ଦେଖେ ମୂଷା ପରକାରେ ।
ଅର୍ଜୁନକୁ ଦେଖି ନଷ୍ଟେ ପଶିବୁ ବିଳରେ ।
ନିରର୍ଥକ ଭୂମିରେ ଯେ ଗର୍ଜେ କାଳସର୍ପ
ଖଗେଶ୍ୱରକୁ ଦେଖିଲେ ଭାଜଇ ତା ଦର୍ପ ।
ତୋହର ଗର୍ଜନ କାଳ ସର୍ପର ପ୍ରକାର
ତୋତେ ସେ ଗରୁଡ଼ ବାବୁ ପାର୍ଥ ଧନୁର୍ଦ୍ଧର
ଯେତେବେଳେ ନନ୍ଦିଘୋଷ ନେତ୍ରରେ ଦେଖିବୁ
ନିଶ୍ଚୟ କହୁଛି ମୁଁ ମୋତେ ଛାଡ଼ି ପଳାଇବୁ ।

ତାହା ଶୁଣି କର୍ଣ୍ଣବୀର ବୋଇଲା ବଚନ
କପାଇଁ ହୋ ମାମୁଁ ମୋତେ କରୁଛ ଲାଞ୍ଛନ ।
ଏବେ ମୋର ଶର୍ଦ୍ଦି ପଣ ଦେଖିବ ସାକ୍ଷାତେ
କପାଇଁ କରୁଛ ମୋତେ ନିନ୍ଦା ଏତେମତେ ।
ଶଲ୍ୟ ବୋଇଲେ ଜାଣିଛି ମୁଁ ତୋହର ଠାଣି
ଯେହୁ ନ ଜାଣେ ତା ଆଗେ କରିବୁ ବଖାଣି ।
ମାରିବାକୁ ଯାଉଥିଲ ପାଣ୍ଡବା ଅସୁର
ସଙ୍ଗତରେ ଯାଇଥିଲେ ଶତ ସହୋଦର ।
ଗିଳିବାପାଇଁ ତାହାଙ୍କୁ ଧରନ୍ତେ ଦଇତ
ରାଜାଙ୍କୁ ଛାଡ଼ି ପଳାଇ ଅଇଲୁ ତୁହି ତ ।
ଅର୍ଜୁନ ନାରାଚ ଘାତେ ହେଲା ବେନିଫାଳ
ତେବେ ଉଦ୍ଧାର ପାଇଲେ କୌରବ ସକଳ
ଯହୁଁ ପାଣ୍ଡବାସୁରକୁ ମାଇଲେ ଅର୍ଜୁନ
ଚଳାଇ ଅଇଲେ ତହୁଁ ନିଜ ନିକେତନ ।
ଶୁଣି ଯାଇଥିଲ ଭାନୁମତୀ ସ୍ୱୟମ୍ବରେ
ନବ ସହସ୍ର ରାଜାଏ ଥିଲେ ସେ ସ୍ଥାନରେ ।
ବହୁପାଷ ରାଜା କରି ସମସ୍ତଙ୍କୁ ଜୟ
ଭାନୁମତୀ ନେଇଗଲା ତୋଇଣ ନିର୍ଦ୍ଦୟ ।
ତୁମ୍ଭେ ଶୁହୁଁ ଥିଲ ତହିଁ ହୋଇ ଜଳ ଜଳ
ତୁମ୍ଭ ଯୋଗେ ସେକାଳରେ ହେଲା କେଉଁ ଫଳ
ଏକା ଧନଞ୍ଜୟ ମାରି ତାହାର ସୈନ୍ୟକୁ
ଭାନୁମତୀ ଆଣିଦେଲେ ଏ କୁରୁରାଜଙ୍କୁ ।
ଆଉ ଯାଉଥିଲ ଘୋଷଯାତ୍ରା ଦେଖିବାକୁ
ଦେଖାଇବାକୁ ସମ୍ପଦ ପାଣ୍ଡବମାନଙ୍କୁ ।
ତାହା ଦେଖି ଚିତ୍ରସେନ ଗନ୍ଧର୍ବ ରାଜନ
ନ ସହି ତୁମ୍ଭ ରାଜାକୁ କରିଲା ବନ୍ଧନ ।
କୋଟିଏ ସୈନ୍ୟଙ୍କୁ ତୁମ୍ଭେ ନେଇଥିଲ ସାଥେ
କେହି ରୋଧି ନ ପାରିଲେ ତାହାକୁ କଷ୍ଟେ ।
ଶୂନ୍ୟ ପଥରେ ରାଜାଙ୍କୁ ନେଇ ଗଲା ଚଳି
ତୁହି କହୁଅଛୁ ମୁହିଁ ଅଟେ ମହାବଳୀ
ସେ କାଳେ ରାଜାଙ୍କୁ ତୁହି ରଖି ନ ପାରିଲୁ
ଧରୁ ସ୍ୱଭାବପଣେ ତୁ ବଣରେ ଲୁଚିଲୁ ।
ଯୁଧିଷ୍ଠିର ଅର୍ଜୁନଙ୍କୁ ଅନୁରୋଧ କରି
ଶରେ ପଥ ରୋଧି ନୃପେ ଆଣିଲେ ଉଦ୍ଧାରି ।
ଆଉ ଏକକଥା ଶୁଣ ଆଦିତ୍ୟର ସୁତ
ତୋହର ବଳବୀର୍ଯ୍ୟର ମହିମା ଯେମନ୍ତ ।

ମକର ସ୍ଥାନେ ଗଲ ଗଉତମ କୂଳ
ନୃପତିଙ୍କୁ ବାନ୍ଧିନେଲା କାଳନେମି ବଳେ ।
ବନସ୍ଥରେ ଅରଜୁନ ଏମନ୍ତ ଦେଖିଲା
ତିନିକୋଟି ସୈନ୍ୟମାରି ରାଜାଙ୍କୁ ରଖିଲା ।
ତହୁଁରେ କାଳନେମିକି କରିଲେ ସଂହାର
ଏହା ମୁଁ ନିଜେ ଦେଖିଛି ନୟନେ ମୋହର ।
ପୁଣି ପାଞ୍ଚାଳ ଦେଶର ଦ୍ରୁପଦ ରାଜନ
ଲକ୍ଷେ ନୃପତିଙ୍କି କରିଥିଲା ସେ ବରଣ ।
ମହାଲକ୍ଷ ବିନ୍ଧି ପାର୍ଥ ଲଭିଲେ କୁମାରୀ
ସର୍ବେ ଗୋଳକଲେ କନ୍ୟା ବଳେ ନେବାଧରି
ଲକ୍ଷେନୃପତିଙ୍କି ଜିଣି ସୈନ୍ୟକଲେ କ୍ଷୟ
କନ୍ୟାନେଇ ଚଳିଗଲେ ବୀର ଧନଞ୍ଜୟ ।
ହେ କର୍ଣ୍ଣ ବିରାଟ ରାଜ୍ୟ ଗୋଧନ ହରଣେ
ଯାହା କହିଥିଲେ ପାର୍ଥ ନାହିଁ କି ତୋ ମନେ
ଅଠର କ୍ଷଉଣୀ ସୈନ୍ୟ ସଙ୍ଗେ ନେଇଥିଲ
ଏକେ ଏକେ ତୁମ୍ଭେମାନେ କେତେ ନ ଯୁଝିଲ
ଅର୍ଜ୍ଜୁନ ତୁମ୍ଭର ଜିଣି ରଖିଲେ ଗୋଧନ
ଭୟେ ପଳାଇ ଅଇଲ ନିଜ ନିକେତନ ।
ବହୁ ଯୋଗ୍ୟତା ତାଙ୍କର ଅଛି ଠାବେ ଠାବେ
କପରି ପାର୍ଥ ଜିଣିବୁ ବୋଲୁଅଛୁ ଏବେ ।
ଏବେ କି ବଦଳିଯାଇ ଅନ୍ୟ କର୍ଣ୍ଣହେଲୁ
ସେ ହେତୁ ଏମନ୍ତ ତୁହି ପ୍ରତିଜ୍ଞା କରିଲୁ ।
ଏପରି ପ୍ରତିଜ୍ଞା ଆନ ଆଗରେ କରିବୁ
ତୁହି ଯେଡ଼େ ବୀର ତାହା ମୁହିଁ ଜାଣେ ସବୁ ।
ତାହା ଶୁଣି କର୍ଣ୍ଣବୀର କହିଲ ବଚନ
ବହୁତ କହିଲ ମାମୁଁ ନ ବଗୃର ମନ ।
ତୋର ସମାନ ସାରଥି ମୋହର ନ ଥିଲ
ତେଣୁକରି କାହିଁ ଅବା ଅଯଶ ହୋଇଲା ।
ଯେତେବେଳେ ଧନୁକୁ ମୁଁ କରେ ଆକର୍ଷଣ
ଶଙ୍କିତ ଚିତ୍ତ ହୁଅନ୍ତି ସ୍ୱୟଂ ନାରାୟଣ ।
ମାରିବି ପାଣ୍ଡବ ବଳ ତୁମ୍ଭ ସାହାଯ୍ୟରେ
ସଖା ହୋଇ ରଥ ଚଳା ଦେଉଥିବ ଖରେ ।
ଏହାଶୁଣି ଦୁର୍ଯ୍ୟୋଧନ ହୋଇଣ ବ୍ୟଥିତ
ବୋଇଲେ ମାମୁଁ ଧରୁଛି ତୁମ୍ଭ ଦେନି ହାତ ।
ଗତକଥା ସବୁ ଏବେ ପରିତ୍ୟାଗ କର
କର୍ଣ୍ଣର ସାରଥି ହୋଇ ରଖ ମୋର ଗିର ।
ରାଜାର ବଚନ ଶୁଣି ଶଲ୍ୟ ମହାମତି
ବୋଇଲେ ହେବି ମୁଁ କର୍ଣ୍ଣ ରଥରେ ସାରଥି
ଜୟ ନୀଳାଚଳନାଥ ଅଗତି ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ।
ତୁମ୍ଭ ମହିମା ବର୍ଣ୍ଣନେ ଅଛି କା ଶକତି
ସାରଳାଦାସଙ୍କୁ ଦିଅ ମାଗଇ ମୁକତି ।

—※—

## କର୍ଣ୍ଣଙ୍କର ପ୍ରଥମଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନର ସନ୍ତାଶୋଇ ଭାଇଙ୍କର ପତନ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ଶୁଣ ମୋ କହିବା ଗିର ।
ବହୁତ କଷ୍ଟରେ ଶଲ୍ୟ ସାରଥି ହୋଇଲେ
କର୍ଣ୍ଣ ରଣକ୍ଷେତ୍ରେ ପଶି କେମନ୍ତ କରିଲେ ।
ସେହିସବୁ କଥା ମୋତେ କରନ୍ତୁ ପ୍ରକାଶ
କହନ୍ତି ଅଗସ୍ତି ମୁନି ଶୁଣହେ ନରେଶ ।
କର୍ଣ୍ଣରଥ ସଜାଇଲେ ଶଲ୍ୟ ବୀରମଣି
ଯହିଁ ଯା ଶୋଭା ଦିଶିବ ତା କଲେ ମଣ୍ଡଣି ।
କେଉଁ ସ୍ଥାନରେ ଚାମର ନେଇ ଟଙ୍ଗାଇଲେ
କାହିଁ ମଣିଝର ମୁକ୍ତା ଯତନେ ଖଞ୍ଜିଲେ ।
ଆଲଟ ଚାମର ପଙ୍ଖା କାହିଁ ଦୋହଲଇ
କଳସ ଖଞ୍ଜିଲେ ରଥ ଶାଖା ଚହଟଇ ।
ଶାର୍ଦ୍ଦୂଳଚର୍ମ ଛାଉଣି ତହିଁ ସର୍ପ ଚିହ୍ନ
ଉଡ଼ଇ ପାଟ ଚିରାଳ ଦିଶେ ଶୋଭାବନ ।
ମନୁରାଜା ପଚାରିଲେ ଅଗସ୍ତି ମୁନିଙ୍କି
କର୍ଣ୍ଣରଥେ ସର୍ପଚିହ୍ନ ରହିଲା କାହିଁକି ।
ଯାତ୍ରାକାଳେ ଯା ଦେଖିଲେ ଅଯାତ୍ରା ହୁଅଇ
ଯାହାକୁ ଛୁଇଁଲେ ପାପ ଆସିଣ ଘୋଟଇ ।
ଯାତ୍ରା ସମୟେ ଭେଟିବ ଯେବେ କାଳସର୍ପ
ଦେଖିଲେ ଅଶୁଭ ପୁଣ ସ୍ପର୍ଶେ ମହାପାପ ।
ଯାରନାମ ରାତ୍ରକାଳେ ମୁଖେ ନ ଧରନ୍ତି
ପୁଣି ଯେହୁ କାମୋଡ଼ିଲେ ପ୍ରାଣୀ ନ ବଞ୍ଚନ୍ତି ।
ଯାରମୁହେଁ ତାର ମଳ ପଡ଼ଇ ଆସିଣ
ପିତୃଏ ସାହାନ୍ତି ଜଳ ନ କରି ଗ୍ରହଣ ।
ଏମନ୍ତ ଯେବଣ ଜୀବ ଅମଙ୍ଗଳକାରୀ
କର୍ଣ୍ଣ ରଥଧ୍ୱଜେ ତାହା ରହିଲା କପରି ।

କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
କାଳସର୍ପ ରଖି କର୍ଣ୍ଣ ହୋଇଲେ ଅଜ୍ଞାନ ।
ଲୁଦ୍ରବୁଦ୍ର ବ୍ୟାଧରୂପ ହୁଅନ୍ତେ ବହ୍ନି
ଖାଣ୍ଡବବନ ଦହନ କରିଲେ ଫାଲ୍‌ଗୁନି ।
ସେ ବନରେ ଯେତେ ଜୀବ କରିଥିଲେ ବାସ
ବନସହ ଅଗ୍ନି ତାଙ୍କୁ କରିଦେଲେ ଗ୍ରାସ ।
ଝିରଳଚନ୍ଦ୍ର ନାମରେ ଥିଲ ଆଶୀର୍ବାଦ
ଯାର ପୁତ୍ର ନାଗରାଜ ତା ପୁତ୍ର ପାବସ ।
ପାବସ ସୁତ ହୋଇଲ ସର୍ପ ବଜ୍ରମୁଖ
ତାହାର ନନ୍ଦନ ନାମ ହେଲା ପଦ୍ମମୁଖ ।
ପଦ୍ମମୁଖର କୁମର କୁବେରର ଜାନୁ
ହଟଚନ୍ଦ୍ର ବୋଲିକରି ଅଟେ ତାର ସୂନୁ ।
ହଟଚନ୍ଦ୍ରର ନନ୍ଦନ ହେଲ ଖନ୍ତୁନଗ
ଏହାର ନନ୍ଦନ ହେଲ ବରାହ ଉରଗ ।
ବରାହ କୁମର ହେଲ ସର୍ପ ଚନ୍ଦ୍ରକାନ୍ତ
ଚନ୍ଦ୍ରକାନ୍ତ ବୀର୍ଯ୍ୟେ ହେଲ କାଳିଆ ଉତ୍ପତ୍ତି ।
କାଳିଆ ନନ୍ଦନ ହେଲା ନାମ ମହାବଳି
ଏହାର କୁମର ହେଲା ନାଗ ଆର୍ଦ୍ରାବଳି ।
ଆର୍ଦ୍ରାବଳିର ନନ୍ଦନ କାଳଖଗ ଅହି
ଏହାର ସୁତ ତକ୍ଷକ ହେଲ ଜଳଶାୟୀ ।
ଜଳଶାୟୀର ନନ୍ଦନ ସର୍ପ ମହାରାଜ
ତାହାର ନନ୍ଦନ ନାମ ଅଟଇ ଝଲେଜ ।
ଝଲେଜ ନନ୍ଦନ ହେଲ ଊର୍ଦ୍ଧ୍ୱକେତୁ ସର୍ପ
ଏହାର ପୁତ୍ର ଶୋଷକ ନାମେ କାଳସର୍ପ ।
ଖାଣ୍ଡବ ବନରେ ଏହି ସର୍ପମାନେ ଥିଲେ
ବନ ଦହନ ସମୟେ ସର୍ବେ ପୋଡ଼ି ମଲେ ।
ଏହାର କୁଟୁମ୍ବ ସବୁ ତହିଁ ଯାନ୍ତେ ପୋଡ଼ି
ଏ ସର୍ପ ପ୍ରାଣ ରଖିଲ କୂପଜଳେ ବୁଡ଼ି ।
ମନେ ମହାକ୍ରୋଧ କରି ଅର୍ଜ୍ଜୁନ ଉପରେ
ରହିଥାଏ ସଦାକାଳେ ଛିଦ୍ର ଖୋଜିବାରେ ।
ପଞ୍ଚ ପାଣ୍ଡବେ ଯେକାଳେ ଗଲେ ବନବାସ
ଅଜ୍ଞାତ ବରଷ ଆସି ହୁଅନ୍ତେ ପ୍ରବେଶ ।
ସର୍ବେ ବସ୍ତୁରିଲେ ସିବା ବିରାଟ ନଗରେ
ଅସ୍ତ୍ରାଦି ରଖିଲେ ଶମୀବୃକ୍ଷର କୋଟରେ ।
ସେହିକାଳେ ଏହି ସର୍ପ ବେଳକାଳ ପାଇ
ଲୁଚିଣ ରହିଲ ତହୁଁ କୋଟରରେ ଯାଇ
ଭାବିଲ ଅସ୍ତ୍ର ନେବାକୁ ଆସିଲେ ଅର୍ଜ୍ଜୁନ
ତାହାକୁ ଏହି ସ୍ଥାନରେ କରିବ ଦଂଶନ ।
ତାର କେତେଦିନ ପରେ କୌରବ କେଶରୀ
ବିରାଟ ଦେଶେ ଚଳିଲେ ଗୋରୁ ଚୋରିକରି ।
ସେଠାରେ ହରଣ କଲେ ଯେକାଳେ ଗୋଧନ
ଉତ୍ତର କୁମର ଘେନି ଆଇଲେ ଅର୍ଜ୍ଜୁନ ।
ଦେଖିଲେ କୌରବ ସୈନ୍ୟ କରୁଛନ୍ତି ଗୋଳ
ଅସ୍ତ୍ର ଆଣିବାକୁ ଗଲେ ଶମୀବୃକ୍ଷ ତଳ ।
ଉତ୍ତରକୁ ବୁଝିଁ ପାର୍ଥ ଦେଲେ ଅନୁମତି
ବୃକ୍ଷେ ଚଢ଼ି ଅସ୍ତ୍ର ମୋର ଆଣ ଶୀଘ୍ରଗତି ।
ଶୁଣି ଉତ୍ତର ଚଢ଼ିଲେ ବୃକ୍ଷର ଉପରେ
ଅସ୍ତ୍ର କାଢ଼ନ୍ତେ ସେ ସର୍ପ ଦଂଶିଲ ହାତରେ ।
ଦେଖିଲ ଅର୍ଜ୍ଜୁନ ନୃପେ ଉତ୍ତରକୁମର
ଭୟପାଇ ପଳାଇଲ ତହୁଁ ଅହିବର ।
ଗାରେଡ଼ି ମନ୍ତ୍ରବଳରେ ବୀରବର ପାର୍ଥ
ଉତ୍ତରକୁମରେ ଝାଡ଼ି କରିଲେ ଜୀବିତ ।
ପୁଣି ପଳାଇ ପଶିଲ ବାରଧି ଭିତର
ଅଭେଦକ ମଣି ଘେନି ହୋଇଲ ବାହାର ।
କର୍ଣ୍ଣଙ୍କ ଛାମୁରେ ଯାଇ ମଣି ଭେଟିଦେଇ
ଶରଣ ପଶିଲ ତାଙ୍କ ପାଦରେ ସେ ଯାଇ ।
ବୋଇଲ ଏ ମଣି ଯେହୁ ରଖେ ହୃଦୟରେ
ଶର କଦାଚ ନ ଭେଦେ ତାହାର ଶରୀରେ ।
ଆଉରି ମୃତ୍ୟୁ ତାହାର ନୁହଇ ନିଶ୍ଚୟ
ଏହା ଶୁଣି ବୋଇଲେକ କର୍ଣ୍ଣ ନରରାୟ ।
ଏହା ଅନୁରୂପେ ତୋତେ କି ଦେବି ପଦାର୍ଥ
ଯାହା ତୁ ମାଗିବୁ ସର୍ପ ତାହା ଦେବି ସତ୍ୟ ।
ଶୋଷକ ବୋଇଲ ତୁମ୍ଭ ରଥଧ୍ୱଜେ ଥିବି
ବାରେକ ପେଷିବ ନନ୍ଦିଘୋଷକୁ ଗିଳିବି ।
ତାହା ଶୁଣି କର୍ଣ୍ଣର ସେ ମନକୁ ଆଇଲ
ସେହିଦିନୁ ରଥଧ୍ୱଜେ ତାହାକୁ ରଖିଲ ।
ତେଣୁ କାଳସର୍ପ ତହିଁ ତା ରଥେ ବିରାଜି
ଫଣାକୁ ବିସ୍ତାରି ଫୁଫୁକାର କରି ଗର୍ଜି ।
ବିଷ ଲହରିକି କଣେ ତା ନିଃଶ୍ୱାସ ତେଜ
ନାରାଚ ପଡ଼ିଲେ ତହିଁ ହୁଅଇ ଦହସ୍ୟ ।
ଯାହା ପୁଚ୍ଛାକଲ ଆହେ ମନୁ ମହାରଥା
ସେ ସବୁ କହିଲି ଏବେ ଶୁଣ ଯୁଦ୍ଧକଥା ।

ବାହାରିଲେ ରଥ ସାଜ କର୍ଣ୍ଣ ମହାବୀର
ଶୃରଅଶ୍ୱ ଯୋଗୁ ହସ୍ତେ ଧରିଲା ସୁନ୍ଦର ।
ବୀର ବାଦ୍ୟମାନ ବାଜେ ଅତ୍ୟନ୍ତ ସୁସ୍ୱରେ
ନିଶାଣ ରାଜପତାକା ଉଡ଼େ ଫରଫରେ ।
ଦିବ୍ୟବେଶେ ସୂର୍ଯ୍ୟସୁତ ହୋଇ ସୁସଜ୍ଜିତ
ଦିଶିଲା ତ୍ରିପୁର ଯୁଦ୍ଧେ ଯେହ୍ନେ ଉମାକାନ୍ତ ।
କୁରୁଳଚନ୍ଦ୍ର ଚରାସ୍ୱେ ଦଣ୍ଡେ ଦେବ ଡୋଳା
ତା ଦେଖି ସନ୍ତୁଷ୍ଟ ହୋଇ ଧୃତରାଷ୍ଟ୍ର ବଳା ।
ବୋଇଲା ହେ ମିତ୍ର ମୋର ପେଡ଼ିବା ଆରତ
ଏହା କହି ସ୍ନେହଭରେ କଲା କୋଳାଗ୍ରତ ।
କର୍ଣ୍ଣ ବୋଇଲା ହେ ମାମୁଁ ମୋ ବଚନ ଶୁଣ
ନିଶ୍ଚୟ ମାରିବି ଆଜ ପାଣ୍ଡବ ଅର୍ଜ୍ଜୁନ ।
ଅନେକ ପ୍ରତିଜ୍ଞା କରି କହେ ଦୁଃଶାବୀର
ନିଶ୍ଚୟ ମାରିବି ମୁହିଁ ଆଜ ବୃକୋଦର ।
ପ୍ରତିଜ୍ଞା କରି କହନ୍ତେ କୃପ ଧନୁର୍ଦ୍ଧର ।
ମୋ ଭାଗେ ରହିଲେ ଦୁଇ ମାଦ୍ରୀର କୁମର ।
ଯେ ଯାର ସାରଥି ରଥ କରିଲେ ମଣ୍ଡଣି
ଅଶ୍ୱ ପଦାତିକ ସୈନ୍ୟ କେ କହିବ ପୁଣି ।
ଏମନ୍ତକାଳେ ନାରଦ ମୁନି ବ୍ରହ୍ମବେତ୍ତା
ପାଣ୍ଡବଙ୍କ ଆଗେ ଯାଇ କହିଲେ ବାରତା ।
ଦ୍ରୋଣଙ୍କ ଅଭାବେ ସେନାପତି ହେଲେ କର୍ଣ୍ଣ
ଅନେକ ପ୍ରଶଂସା ତାଙ୍କୁ କରଇ ରାଜନ ।
ଶଲ୍ୟ ଯେ ସାରଥି ହେବେ କର୍ଣ୍ଣବୀର ରଥେ
ଶୁଣି ସ୍ତମ୍ଭୀଭୂତ ହେଲେ ଦେବ ଜଗନ୍ନାଥେ ।
ଦେଖି ଅର୍ଜ୍ଜୁନ ବୋଇଲେ ଆହେ ଦୟାମୟ
ଏ କି ବିପରୀତ କଥା ହେଉଛି ବିସ୍ମୟ ।
ଗୋବିନ୍ଦ ବୋଇଲେ କର୍ଣ୍ଣ ଅଟେ ମହାମଲ୍ଲ
ତାହାର ସାରଥି ପୁଣି ହୋଇଛନ୍ତି ଶଲ୍ୟ ।
ଯେହୁ ଧନୁକୁ ଧଇଲେ ମୋର ହୁଏ ଭୟ
ଏମନ୍ତ ଯେ କର୍ଣ୍ଣ ଶଲ୍ୟ ତାହାର ସହାୟ ।
ଏହାଙ୍କର ସମାନ ତୁ ହେବୁ କି ଅର୍ଜ୍ଜୁନ
ଅର୍ଜ୍ଜୁନ ବୋଇଲେ କିସ କହ ଭଗବାନ ।
ଆବର ବୋଇଲେ ପ୍ରଭୋ ସହସ୍ରେ ହେଉ କର୍ଣ୍ଣ
ଦୁଇସହସ୍ର ଶଲ୍ୟ ହେଲେ ନ ହେବେ ସମାନ ।
ଅନୁଗ୍ରହ କରି ନାଥ ଥାଅ ମୋର ରଥେ
ମାରିବି ମୁଁ କର୍ଣ୍ଣ ଶଲ୍ୟ ଶକୁନି ସହିତେ ।

ଭୀମସେନଙ୍କୁ କହିଲେ ଯାଇ ଗୁପ୍ତଚର
ତୁମ୍ଭ ସଙ୍ଗେ ଦୁଃଶା ଆଜ କରିବ ସମର ।
ତାହା ଶୁଣି ଭୀମସେନ ହୋଇ ତୋଷମନ
ବୋଇଲେ ଯାଜ୍ଞସେନୀର ଥିଲେ ପୂର୍ବପୁଣ୍ୟ ।
ତେବେ ଆଜ ତାର ମୁହିଁ ମୁକୁଳିତ କେଶ
ଦୁଃଶାସନ ବାହୁରକ୍ତେ ବାନ୍ଧିବି ଅବଶ୍ୟ ।
ଏହା କହି ଦ୍ରୌପଦୀଙ୍କ ମୁଖକୁ ଅନାଇ
ବୋଇଲେ ଥିବୁ ତୁ ଆଜ ମୋର ବାଟ ଗୃହିଁ ।
ସହଦେବଙ୍କୁ ତୋ ପାଶେ ପଠାଇବି ଯେବେ
ତାହା ସଙ୍ଗରେ ସତ୍ୱର ଚଳିଯିବୁ ତେବେ ।
ସାଜ ସାଜ ବୋଲି ଭୀମ ଦେଲ ବୀରଡାକ
ଗଦା ଘୂର୍ଣ୍ଣନ୍ତେ କୁରୁଏ ଲଭିଲେ ଚମକ ।
ଭୀମସେନର ପ୍ରତିଜ୍ଞା ଦେଖିଣ ପାଞ୍ଚାଳୀ
କ୍ରୋଧଭରେ କହଇ ସେ ମନେ ମନେ ଭାଳି ।
ସକଳେ ବଞ୍ଚିଲେ ପିତା ମଲେ ରଣକରି
କେଉଁ ପାତକ ପୂର୍ବରେ ଥିଲି ମୁଁ ଆଚରି ।
ତାର ପ୍ରତିଫଳ ଆସି ଫଳେ ଏତେକାଳେ
ଏହା କହିଣ କାନ୍ଦିଲେ ଅତ୍ୟନ୍ତ ବିକଳେ ।
ସ୍ତ୍ରି ରାକୁଳେ ଜାତ ହୋଇ ହେଲି ଅଲକ୍ଷଣୀ
ଉଭୟ କୁଳକୁ ନାଶ କରାଉଛି ଆଣି ।
ପାଞ୍ଚାଳ ରାଜନ ମୋର ପିତା ଗୁଣମାନ
ଅକାରଣେ ରଣେ ପଡ଼ି ହୋଇଲେ ନିଧନ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ମୁଖକୁ ଅନାଇ
ପୁଣି କାନ୍ଦିଲେ ଦ୍ରୌପଦୀ ବ୍ୟାକୁଳିତ ହୋଇ ।
ଦ୍ରୁପଦ ପରାୟେ ପିତା ମରାଇ ବସିଲ
ପୁଣି ପାଣ୍ଡବଙ୍କୁ ଗୃହିଁ ଏଠାରେ ରହିଲ ।
ଶିଖଣ୍ଡୀ ବୋଇଲେ ଆଉ ବିଳାପ ନ କର
ପିତାଶତ୍ରୁ ଦ୍ରୋଣଙ୍କୁ ତ କଲୁଣି ସଂହାର ।
ଏହାସିନା କ୍ଷତ୍ରୀଙ୍କର ଉଚିତ ଅଟଇ
ଅକାରଣରେ ଝିଙ୍ଗାସ କର କାହିଁପାଇଁ ।
ଆଗୋ ଯାଜ୍ଞସେନି ଶୁଣ ମୋର ଏହି ବାଣୀ
କୌରବଙ୍କ ହଟହଟା ଦେଖିବ ଏକ୍ଷଣି ।
ଏମନ୍ତ କହିଣ ସର୍ବେ ହୋଇଲେ ବାହାର
ଦ୍ରୁପଦ ଦୁଲଣୀ ବିଜେ କଲେ ଅନ୍ତଃପୁର ।
ନନ୍ଦିଘୋଷ ରୂଢ଼ଦ୍ୟନ୍ତେ ସତ୍ୱରେ କେଶବ
ଶ୍ୱେତହସ୍ତୀ ପୃଷ୍ଠେ ବିଜେ ଯୁଧିଷ୍ଠିର ଦେବ ।

ସୂର୍ଯ୍ୟ ଉଦେ ହେଲେ ଯେହ୍ନେ ଦିଶେ ଉଦେଗିରି
ନନ୍ଦିଘୋଷ ଶଲ୍ୟ ଯାଉଣ ଚଳେ ଜ୍ୟୋତିକର ।
ପାର୍ଥଙ୍କର ରଥ ଦିଶେ ପଶ୍ଚିମ ଦିଗରେ
ଦେଖି କର୍ଣ୍ଣ ପୁଚ୍ଛାକଲା ଶଲ୍ୟଙ୍କୁ ସଧୀରେ ।
କହ ମାମୁଁ ଏକଆତ୍ମା ଶ୍ରୀକୃଷ୍ଣ ଅର୍ଜୁନ
ମୋ ବିପତ୍ତିକାଳେ କିସ କରିବ ଯତନ ।
ଶଲ୍ୟ ବୋଇଲେ ଯଦ୍ୟପି ପଡ଼ିବୁ ସମରେ
ତେବେ ରଥ ବାହିନେବ ରାଜାଙ୍କ ଛାମୁରେ ।
ଏଣେ ପୁଚ୍ଛାକଲେ ପାର୍ଥ ଶୁଣ ଦୟାମୟ
କର୍ଣ୍ଣ ମହାରଥୀ ଏକା ସମରେ ଦୁର୍ଜ୍ଜୟ ।
ତାହାଙ୍କର ସଖା ଅଟେ ଶଲ୍ୟ ମହାଭାଗ
ଏମନ୍ତେ ସ୍ଥଳେ ମୁଁ ରଣେ ହେଲେ ଅପାରଗ
ଆପଣ ମୋ ପକ୍ଷେ ପ୍ରଭୁ କି କଥା କରିବ
ସେହି କଥା ବିସ୍ତାରଣ କହ ବାସୁଦେବ ।
ଗୋବିନ୍ଦ ବୋଇଲେ ରଣେ ତୁ ହେଲେ ଅଶକ୍ୟ
ଚକ୍ରରେ ଛେଦିବି ଶଲ୍ୟ କର୍ଣ୍ଣର ମସ୍ତକ ।
କୃଷ୍ଣଙ୍କ ମୁଖରୁ ଶୁଣି ଏମନ୍ତ ବଚନ
ଧନୁ ଶସ୍ତ୍ର ଥୋଇ ପାଦେ ପଡ଼ିଲେ ଅର୍ଜୁନ ।
ତାଙ୍କୁ ଉଠାଇଲେ କୃଷ୍ଣ ଆଲିଙ୍ଗନ କରି
ବୋଇଲେ ତୁ ପଞ୍ଚଆତ୍ମା ଅଟୁ ଯେ ମୋହରି ।
ମୁହିଁ ଯେବେ ରାମ ତୁ ରେ ଅନୁଜ ଲକ୍ଷ୍ମଣ
ମୁହିଁ କୃଷ୍ଣ ହେଲେ ତୁହି ନରନାରାୟଣ ।
ମୁହିଁ ନରସିଂହ ତୁହି ହିରଣ୍ୟର ସୁତ
ସବୁକାଳେ ଅଟୁ ତୁହି ମୋର ପଞ୍ଚଭୂତ ।
ବଳଭଦ୍ର ଦେବ ମୋର ନିଜ ଜ୍ୟେଷ୍ଠ ଭାଇ
ତାଙ୍କ କଥା ନ ମାନଇ କେବଳ ତୋ ପାଇଁ ।
ଶଲ୍ୟ କର୍ଣ୍ଣ କିବା ଛାର ତାଙ୍କୁ କରୁ ଭୟ
ଶିବ ବ୍ରହ୍ମା ବାଧା ହେଲେ ଯିବେ ଯମାଳୟ ।
ଶ୍ରୀକୃଷ୍ଣ ମୁଖୁ ଏମନ୍ତ ପ୍ରତିଜ୍ଞାକୁ ଶୁଣି
ଦେବଦତ୍ତ ଶଙ୍ଖନାଦ କଲେ ବୀରମଣି ।
ଏହିକାଳେ କର୍ଣ୍ଣରଥ ହେଲା ଉପସ୍ଥିତ
ପ୍ରଥମେ ବାୟବ୍ୟ ଶର ପ୍ରହାରିଲେ ପାର୍ଥ ।
ଆକର୍ଷି ନାରାଚ ରଥୁ ବିନ୍ଧେ ସବ୍ୟସାଚୀ
କର୍ଣ୍ଣର ରଥ ଯେ ଗଲା ଶତେ ଭେଡ଼ା ଘୁଞ୍ଚି ।
ଶଲ୍ୟ ସାରଥି ଠେକିଲା ଆଣି ତହିଁ ରଥ
ଅର୍ଜୁନକୁ ଦେଖି ବୋଲେ ରାଧେୟ ଭରତ ।
ଦ୍ରୋଣ ପ୍ରାୟ ମୋତେ ବୁଝିଲୁକି ଆରେ ପାର୍ଥ
କୂଟେ ମାରିଲୁ ମିତ୍ର ରାଜା ଜୟଦ୍ରଥ ।
କୂଟେ କରାଇ ଭୀଷ୍ମଙ୍କୁ କଲୁ ଶରଶଯ୍ୟା
ନପୁଂସକ ଦେଖାଇ ସେ କଲେ ଶର ତେଜ୍ୟା ।
କାଳବଶେ ପଡ଼ିଲୁଣି ଆଜ ମୋର ପାଶ
ଆଉ ତୁ ନ ରଖ ମନେ ତୋ ଜୀବନ ଆଶ ।
ତାହା ଶୁଣି ଧନଞ୍ଜୟ କରିଲେ ଉତ୍ତର
ମୂର୍ଖେ କହିଲେ କି ହେବ ବଡ଼ପଣ ତୋର ।
ଧନୁ ଧରି ମୋର ସଙ୍ଗେ କରି ଆସି ରଣ
ତେବେତ ଜାଣିବା ସିନା ତୋ ସମର୍ଥ ପଣ ।
ଏହା କହି ସୂର୍ଯ୍ୟାବଳୀ କରନ୍ତେ ପ୍ରହାର
ଶଏଭେଡ଼ା କର୍ଣ୍ଣରଥ ଘୁଞ୍ଚେ ପୁନର୍ବାର ।
ତା ଦେଖି ବୋଇଲା କର୍ଣ୍ଣ ଶଲ୍ୟ ହେଲ ବାଇ
ରଣେ ରଥ ଘୁଞ୍ଚିଯାଏ ନ ଧର କପାଇଁ ।
ଶଲ୍ୟ ବୋଇଲେ ଯଦ୍ୟପି ରଥ ନ ଘୁଞ୍ଚନ୍ତା
ତେବେ ଶରେ ରଥସହ ଛିଡ଼ି ଯାଇଥାନ୍ତା ।
ପୁଣି ଶଲ୍ୟ ରଥ କଲେ ନନ୍ଦିଘୋଷ ଆଗ
ଧନୁ ଟଙ୍କାର କରିଲେ କର୍ଣ୍ଣ ହୋଇ ଆଗ ।
ଶତେକ ନାରାଚ କର୍ଣ୍ଣ କରିଲେ କ୍ଷେପଣ
ପଞ୍ଚବିଂଶ ଶରେ ପାର୍ଥ କଲେ ନିବାରଣ ।
ଦୁଇଶତ ଶର ପୁଣି କର୍ଣ୍ଣ ପ୍ରହାରିଲେ
ଶଏ ନାରାଚେ ଅର୍ଜୁନ କାଟି ପକାଇଲେ ।
ପୁଣି ଶଏକାଣ୍ଡ କର୍ଣ୍ଣ ମାରିଲେ ପାର୍ଥଙ୍କୁ
ଏକଶର ପ୍ରହାରିଲେ କପି କେତନକୁ ।
ଚାରି ଅଶ୍ୱଙ୍କୁ ବିନ୍ଧିଲେ ଛଅ ଛଅ ଶର
ଏହିପରି ବିକ୍ରମେଣ ତାକୁ କର୍ଣ୍ଣବୀର ।
ପାର୍ଥ ପ୍ରହାରିଲେ ପୁଣି ଏକବିଂଶ କାଣ୍ଡ
କର୍ଣ୍ଣଙ୍କର ସବୁ ବାଣ କଲେ ଖଣ୍ଡ ଖଣ୍ଡ ।
ବେନି ବୀରଙ୍କ ସମର ଅତି ବଳୀୟାର
ଶରେ ଶର ବାଜି ଅଗ୍ନି ହୁଅଇ ବାହାର ।
ଦକ୍ଷିଣ ଦିଗରୁ ଭୀମ ହୋଇଲେ ପ୍ରବେଶ
ସେ ସ୍ଥାନରେ ରହିଥିଲେ କଳିଙ୍ଗ ନରେଶ ।
ନବଲକ୍ଷ ହାତୀ ସାତକ୍ଷୌଣୀ ବଳ ନେଇ
ଭୀମଙ୍କ ଆସିବା ପଥେ ଉଗାଳିଲେ ଯାଇ ।
ସହଦେବ କହିଦେଲେ ଏ କଳିଙ୍ଗ ସେନ
ଭେଟିଲେ ଏହାକୁ ଆସି କ୍ଷୋଭ ଦିବସେଣ

କଳିଙ୍ଗସେନ ଦେଖିଣ ଭୀମ ପରଚଣ୍ଡ
କାଳ କୃତାନ୍ତ ପରାୟେ ବଢ଼ାଇଲେ ପିଣ୍ଡ ।
ପ୍ରଚଣ୍ଡ ପବନଙ୍କୁ ସେ କଲେ ସ୍ମରଣ
ବୋଇଲେକ ପିତା ଆଜ ସ୍ବା ସଙ୍ଗେ ମୋ ରଣ
ପ୍ରଥମ ଉଦଯୋଗରେ ମୁଁ ପ୍ରତିଜ୍ଞା କଲି
ନବଲକ୍ଷ କୁଞ୍ଜରଙ୍କୁ ଉଡ଼ାଇବି ବୋଲି ।
ଏବେ ମୋ ଗଦାରେ ଆସି କରନ୍ତୁ ବିଶ୍ରାମ
ମାତଙ୍ଗଙ୍କୁ ଉଡ଼ାଇବି ପତଙ୍ଗ ସମାନ ।
ପିତାଙ୍କୁ ସ୍ମରଣ କରି ବୀର ବୃକୋଦର
କଳିଙ୍ଗସେନର ଭୁଜେ କରିଲେ ସମର ।
ବାଉନ ବାଉନ ଭାର ଦେନିଗଦା ଧରି
ବୁଲାଇଲେ ଅତିବେଗେ ଚକ୍ରାକାର କରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ହେଲା ଉଲ୍‌କାପାତ
ଭୟେ ଦୁଇପକ୍ଷ ସୈନ୍ୟ ହୋଇଲେ ଇତସ୍ତତ ।
ଅଯୋଗ ପ୍ରଭଞ୍ଜନର କମ୍ପେ । ଏତେ ମୂର୍ତ୍ତି
କିଂଭୂତ କାରଣେ ହୁଏ କେହି ନ ଜାଣନ୍ତି ।
ନବଲକ୍ଷ ମତ୍ତହସ୍ତୀ କଳିଙ୍ଗସେନର
ଉଡ଼ିଲେ ଗଗନେ ବକପକ୍ଷୀ ପରକାର ।
ସମସ୍ତେ ଉଡ଼ିଲେ ଯାଇ ଗଗନ ମାର୍ଗରେ
ସିନ୍ଧୁ ଜଳେ ଢେଉ ଉଠେ ସେ ବାୟୁ ଘାତରେ
ଦୁର୍ଯୋଧନ ସର୍ବ ସୈନ୍ୟ ଘେନି ପଳାଇଲେ
ହସ୍ତିନା ନଗରେ ଯାଇ ଲୁଚିଣ ରହିଲେ ।
ସୈନ୍ୟସହ ନନ୍ଦଘୋଷ ଘେନି ନାରାୟଣ
ପଳାଇ ଇନ୍ଦ୍ରପ୍ରସ୍ଥରେ ରହିଲେ ଯାଇଣ ।
ଆଶ୍ଚର୍ଯ୍ୟ ହୋଇ ପୁଚ୍ଛିଲେ ବାଳଙ୍କ ରାଜନ
ଆହେ ମୁନି ଅସମ୍ଭବ ଭାଷିଲେ ବଚନ ।
ଭାରତ ଆଖ୍ୟାନ ଯେବେ ନିନ୍ଦା ମୁଁ କରିବି
ତେବେ ତା ଗଳିତ କୁଷ୍ଠ ବ୍ୟାଧିରେ ମରିବି ।
ନିନ୍ଦା ନ କଲେହେଁ ମନେ ବିଶ୍ୱାସ ନୁହଇ
ଭୀମସେନ କେତେ ବଡ଼ ଗଦା ତହିଁ ଥିଲେ ବହି ।
ସେ ଗଦାର ଘାତଘାତ ହୋଇଥିଲା କେତେ
ଶୁଣି ଏ କଥା ସନ୍ଦେହ ଲାଗିଲା ତ ମୋତେ ।
କହନ୍ତି ଅଗସ୍ତି ମୁନି ଶୁଣ ନୃପବର
ଭୀମସେନଙ୍କ ମହିମା ଦେବେ ଅଗୋଚର ।
କହନ୍ତି ଅଗସ୍ତି ପିତାମହ ବାଳଖିଲ୍ୟା
ଭୀମସେନ ଅଟନ୍ତି ସେ ପବନର ବଳା ।

ବୃକୋଦର ସେ ସ୍ଥାନରେ ବିଶ୍ରାମ ହେଲେ
ଆଠଶ ଅଠାଶିହାତ ଉଚ୍ଚରେ ବଢ଼ିଲେ ।
ଗଦାର ଗୁରୁତା ଏବେ କହୁଅଛୁ ଶୁଣ
ଶତେକ ତୋଳାରେ ମାତେ ବୋଲିଣ ପ୍ରମାଣ ।
ଶତମାତ୍ରେ ପ୍ରଲମ୍ବଙ୍କୁ ବୋଲିଣି ହୁଅଇ
ସହସ୍ରେକ ପ୍ରଲମ୍ବଙ୍କୁ ସ୍ରୋଣେକ ବୋଲଇ ।
ଶତସ୍ରୋଣେ ହ୍ୱାପରର ଭାର ବୋଲି ଗଣି
ଏ ଭାର ବହନେ ଶକ୍ୟ ଯେଉଁ ବୀରମଣି ।
ଏମନ୍ତ ଶତଭାରରେ ବୀରଙ୍କୁ ଅଙ୍ଗାଏ
ଦୁଇ ଅଙ୍ଗାରେ ସେ ଗଜା ଭାରଙ୍କୁ ବୋଲାଏ ।
ଏ ଭାବେ ବାଉନ ଭାର କହନ୍ତି ପାବନି
ଏହି ଭୂଜରେ ସମାନ ଅଟେ ଗଦା ଦେନି ।
ଏ ଗଦା ଆଘାତ କଲେ ନ ସହେ ଭୂଧର
ସୁରବଣ ଗିରି ଭୀମ କରିଥିଲେ ଚୂର ।
ମୁରବଣ ଗିରି ଅଟେ ସହସ୍ର ଯୋଜନ
ଏ ଗଦାରେ ପିଟି ଭୀମ କରିଦେଲେ ଚୂର୍ଣ୍ଣ ।
ଏ ବିଧିରେ ଦେନି ଗଦା ବୁଲାଅନ୍ତେ ଭୀମ
ଷୋଡଶ ପବନ ତହୁଁ ହେଲା ଉତପନ୍ନ ।
ଏହି ଗଦା ଭୀମ ବୁଲାଇଲା ଯେତେବେଳେ
ଡରିଲେ ସେ କୁରୁବଳ ଆଦି ଦିଗପାଳେ ।
ବୃକୋଦର ମୂରତିକି ଧରି ବୀର ଭୀମ
ହୁଅନ୍ତା ସେ ଶତସିଂହଠାରୁ ବଳବାନ ।
ରହନ୍ତା ଯେବେହେଁ ତା ଭୁଜେ ବାୟୁ ଅଣୋଶ୍ୱାଶ
ସ୍ଥାବର ଜଙ୍ଗମ ଆଦି ସର୍ବେ ହୁଅନ୍ତେ ନାଶ ।
ଆକାଶେ ଘୋଟିଲା ପୁଣି ଭୀମସେନ କାୟ
କଳିଙ୍ଗ ହସ୍ତୀ ଦିଶିଲେ ଛୁଟଳାର ପ୍ରାୟ ।
ଭୀମ ଆଉଥରେ ଯେବେ ବୁଲାନ୍ତେ ସେ ଗଦା
ଗିରି ସମୁଦ୍ରରେ ପଡ଼ି ବନି ହୁଅନ୍ତା ପଦା ।
କଳିଙ୍ଗସେନକୁ ଭୀମ କରନ୍ତି ନିଧନ
ଦଉଡ଼ିଲେ ମାରିବାକୁ କଉରବ ସୈନ୍ୟ ।
ସମଦଣ୍ଡ ସାଜ ପୁଣି ଆସନ୍ତେ କୌରବେ
କିଳିକିଳା ନାଦକରି ଧାଇଁଲେ ପାଣ୍ଡବେ ।
ଭୀମ ଆଗରେ ପଡ଼ନ୍ତେ କଉରବ ଥାଟ
ସୈନ୍ୟଙ୍କୁ ମନ୍ଥନ କଲେ ପବନର ସୁତ ।
ରଥ ଗଜ ଅଶ୍ୱ ସୈନ୍ୟ ଯା ପଡ଼େ ଆଗରେ
ଶେଷ ନ ରଖନ୍ତି କିଛି ଗଦା ପ୍ରହାରରେ ।

ସୈନ୍ୟଙ୍କ ଅବସ୍ଥା ଦେଖି ଶକୁନି ଧାଇଁଲେ
ସତାଣୋଇ ଭାଇ ତାଙ୍କ ସଙ୍ଗରେ ଅଇଲେ ।
ଶକୁନି ବୋଇଲେ ତୁମ୍ଭେ ଶୁଣ ସର୍ବବୀରେ
ସୈନ୍ୟ ସଂହାର ହୁଅନ୍ତି ଭୀମର ଗଦାରେ ।
ତୁମ୍ଭେମାନେ ବୋଲାଉଛ ମହା ମହା ବୀର
ଭୀମସେନ ଉପରକୁ ଦଉଡ଼ ସତ୍ୱର ।
ମନ୍ତ୍ରୀଙ୍କ ବଚନ ଶୁଣି ସେହି ବୀରଗଣ
ରଥେ ଗଜେ ଅଶ୍ୱେ ସର୍ବେ କଲେ ଆରୋହଣ
କୁନ୍ତ ଭାଲ ଖଣ୍ଡା ଧରି ହୋଇଲେ ବାହାର
ଏକମୁଖେ ବୋଇଲେକ ସର୍ବେ ମାର ମାର ।
କମ୍ପିଲା ମେଦିନୀ କୁରୁବୀରଙ୍କ ନାଦରେ
ଭୀମ ତରଟି ଚାହିଁଲେ ବେନି ନୟନରେ ।
ପୁଣି ବିଚାରନ୍ତି ମନେ ଅରି ନିସୂଦନ
ସର୍ବେ ବାହାହୋଇ ଆଜି କଲେ ଆଗମନ ।
ଆଜି କି ଦ୍ରୌପଦୀଙ୍କର ମୁକୁଳିତ କେଶ
ବନ୍ଧନ ହେଲା ପରାୟେ ହେଉଅଛି ଦୃଶ୍ୟ ।
ଏହା ଭାବି ଦଉଡ଼ିଲେ ଘେନି ଗଦାବର
ଉଭା ହୋଇଲେ ଯାଇଣ ତାହାଙ୍କ ଆଗର ।
ଦୁରାନ୍ତକ ଦୁରାସନ ଦୁର୍ବଳ ଦୁର୍ମନ
ଦୁରାଦମ ଦୁରାଚଳ ଦୁର୍ଜଟ ଦୁଷ୍କର୍ଣ୍ଣ ।
ଦୁରାନନ୍ଦ ଦୁରାସନ୍ଦ ଦୁରନ୍ତ ଦୁର୍ଗମ
ଦୁର୍ବଦ ଦୁର୍ଜୟ ଦୁଷ୍ଟ ଦୁରେଖ ଦୁର୍ଦ୍ଦମ ।
ଦୁଃଶୀଳ ଦୁର୍ବୀର ଦୁର୍ଗ ଦୁର୍ମୁଖ ଦୁର୍ମଦ
ଦୁଷ୍କର୍ଣ୍ଣକ ଦୁଷ୍ଟଧର୍ଷ ଦୁର୍ଦ୍ଦଗ ଦୁର୍ଗଦ ।
ଦୁରଦୃଷ୍ଟ ଦୁର୍ମର୍ଷଣ ଦୁର୍ଭିକ୍ଷ ଦୁର୍ମିଛ
ଦୁରତ୍ୟୟ ଦୁର୍ନିରୀକ୍ଷ ଦୁର୍ବ୍ୟୟ ଦୁର୍ଗଭ ।
ଦୁରାରମ୍ଭ ଦୁରାହାର ଦୁଷ୍କର୍ମା ଦୁର୍ବହ
ଦୁରାକାଙ୍କ୍ଷ ଦୁର୍ବହଣ ଦୁର୍ମନା ଦୁରୂହ ।
ଦୁର୍ଭେଦ୍ୟ ଦୁଃସ୍ୱପ୍ନ ଦୁଷ୍ଟ ଦୁର୍ଲ୍ଲଭ ଦୁର୍ଗତ
ଦୁର୍ମୋହ ଦୁରତିକ୍ରମ ଦୁଃଶାନ୍ତ ଦୁର୍ଦ୍ଦାନ୍ତ ।
ଦୁର୍ବାକ୍ୟ ଦୁର୍ନାଥ ଦୁଃଖୋଚ୍ଛିତ ସେ ଦୁର୍ଦ୍ଧର
ଦୁର୍ଭୟ ଦୁରାଭସନ୍ଧ ଦୁର୍ଣ୍ଣୟ ଦୁସ୍ତର ।
ଦୁର୍ଗପୂଜ ଦୁଷ୍କାଢର ଦୁଷ୍ପାର ଦୁରମ
ଦୁର୍ବିରଦ ଦୁରପେକ୍ଷ ଦୁଷ୍ପ୍ରିୟ ଦୁଃସମ ।
ଦୁଃସହ ଦୁର୍ଜନ ଦୁରଧର୍ଷ ଦୁସ୍ମାନ
ଦୁର୍ଲ୍ଲୋଚନ ଦୁର୍ବଦନ ଦୁର୍ଭାଗ୍ୟ ଦୁସ୍ନାମ ।

ଦୁରମଲ ଦୁର୍ଗନକ ଦୁରାକ ଦୁର୍ଦ୍ଦାକ
ଦୁରାପାତ ସେ ଆଦର ଦୁରାଭ ଦୁର୍ନାକ ।
ଦୁର୍ଭାନି ଦୁଷର ଦୁର୍ଗ ଦୁର୍ମାଳ ଦୁମାଳି
ଦୁରେଣେକଜ ଦୁରାଙ୍କର ଦୁର୍ଗମା ଦୁର୍ଦ୍ଦଳ ।
ଦୁର୍ବେ ଦୁର୍ବିମୋର୍ଦ୍ଦନ ଦୁଃଶେମ ଦୁଷ୍ଟନ୍ତ
ଦୁର୍ନାମକୁ ମିଶାଇଣ ସତାଣୋଇ ଭ୍ରାତ ।
ହେରେକାର କରି ଘୋର ରଡ଼ମାନ ଦେଇ
ଯୋଦ୍ଧା ଅସ୍ତ୍ର ଶସ୍ତ୍ର ଧରି ଅଇଲେକ ଧାଇଁ ।
ମାର ମାର କରି ଭୀମ ଚାରିଆଡ଼େ ବେଢ଼ି
ଯୋଦ୍ଧା ଅସ୍ତ୍ର ଶସ୍ତ୍ର ଘେନି ମାଇଲେ ସଜାଡ଼ି ।
ଦେଖି ଭୀମସେନ କୋପେ ଗଦା ବୁଲାଇଲେ
ସେ ଗଦାଘାତେ ଦୁର୍ଦ୍ଦସ୍ତ ଦୁରାପଦ ମଲେ ।
ଦୁଇ ସୋଦର ପଡ଼ନ୍ତେ ବାକି ସର୍ବେ ଉଠି
ଗଦା ପ୍ରହାର କରିଲେ କରି ଏକମୂଠି ।
ସମସ୍ତଙ୍କ ଗଦା ପଡ଼ି ଭୀମସେନ ଅଙ୍ଗେ
ଭାଜିଗଲା ଗୁଣ୍ଡା ହୋଇ ଭୀମ ରଣ ରଙ୍ଗେ ।
ଅସ୍ତ୍ର ଭାଙ୍ଗି ଯାଏ ସର୍ବେ ହୋଇ ଭୟଗ୍ରସ୍ତ
ପଳାଇଲେ ରଣସ୍ଥଳୁ ଦଉଡ଼ି ଏକତ୍ର ।
ଦୁର୍ଯ୍ୟୋଧନର ସୋଦରେ ପଳାଇଲେ ଭାଜି
ଏକା ବୃକୋଦର ପଛେ ଧାଏଁ ଚାଳଗାଜି ।
ଗଦାଧରି ପଛଆଡୁ କରନ୍ତେ ପ୍ରହାର
ଭୂମିରେ ଲୋଟିଲେ ରକ୍ତ କରିଣ ଉଦ୍‌ଗାର ।
ରଥ ଗଜ ଅଶ୍ୱ ଆଦି ଯା ପଡ଼ଇ ଆଗରେ
ଚୂର୍ଣ୍ଣ କରିଦିଅନ୍ତି ଭୀମ ଗଦା ପ୍ରହାରରେ ।
ଲେଉଟି ନ ଚାହିଁ ସର୍ବେ ଯାଆନ୍ତି ପଳାଇ
ବରଡ଼ାପତର ପ୍ରାୟେ ଶରୀର କମ୍ପାଇ ।
କେହି ଦନ୍ତେ କୁଟା ଧରି ପଡ଼ନ୍ତି ପାଦରେ
କେହି ବା ଶରଣ ବୋଲି କହନ୍ତି ମୁଖରେ
ନିଜପ୍ରୋଧ ନିରପେକ୍ଷ ଯେଣୁ ଭୀମସେନ
ଯେ ଶରଣ କହେ ଆଗେ ଯାଏ ତା ଜୀବନ ।
ଗର୍ଜ୍ଜନ କରିଣ ଭୀମ ପଛୁଡ଼ୁ ପିଟନ୍ତି
ବାତେ ରମ୍ଭାବନ ପ୍ରାୟେ ସୈନ୍ୟ ଲୋଟନ୍ତି ।
ଯେ ଜୀବନ ଆଶା ଛାଡ଼ି କରଇ ସମର
ଏକ ଗଦାକେ ଦେଖଇ ଯାଇ ଯମପୁର ।
କେହି ପରିଘ ମାଇଲେ ଭୀମଙ୍କ ଉପରେ
ଅଙ୍ଗେ ବାଜି ଚୂର୍ଣ୍ଣ ହୋଇ ପଡ଼ଇ ଭୂମିରେ ।

ଅସ୍ତ୍ର ଆସିବାର ଦେଖି ଭୀମ ମହାବଳ
ଠିଆହୋଇଥାନ୍ତି ଦୃଢ଼େ ପାତି ବକ୍ଷସ୍ଥଳ ।
ପରିଘ ଭୁଷଣ୍ଡି କୁନ୍ତ ସେ ଯେତେ ମାରଇ
ଭୀମ ବକ୍ଷସ୍ଥଳେ ପଡ଼ି ତା ଚୂର୍ଣ୍ଣ ହୁଅଇ ।
ଅସ୍ତ୍ର ବ୍ୟର୍ଥହେବା ଦେଖି ଭୟେ ଯୋଦ୍ଧାମାନେ
ବିକଳେ ପଳାଇଯାନ୍ତି ନ ରହି ସେ ସ୍ଥାନେ ।
ସାରଥି ଧରି ପିଟନ୍ତି ସାରଥି ଉପର
ରଥକୁ ରଥରେ ପିଟି କରିଦ୍ୟନ୍ତି ଚୂର ।
କୁଞ୍ଜରକୁ ଧରି ବାମ ଦକ୍ଷିଣେ ବୁଲାଇ
ପିଟନ୍ତି ହସ୍ତୀ ଉପରେ କୋପାବିଷ୍ଟ ହୋଇ
ଦୁଇ ଦୁଇ ଅଶ୍ୱଙ୍କୁ ସେ ଧରିଣ ଫିଙ୍ଗଇ
ପଡ଼ିଣ ସେ ଦନ୍ତୁଦୂରେ ଯାନ୍ତି ଗୁଣ୍ଡା ହୋଇ ।
ଯେ ନସତ ହୋଇ ରହେ ବୃହାନ୍ତି ଲେଉଟି
ଶରେ ଶର ପରିତାଳ ଅଗ୍ନି ଶିଖା ଉଠି
ଦୁରାପଦ ସେ ସମର କହି ତ ନ ପାରି
ଲେଖନେ କେ ପାରିବ ଯେ ତାହା ଅନ୍ତ କରି
ସଂକ୍ଷେପେ କହିବ ତାର ଠିକ ଠିକ କଥା
ବିସ୍ତାରି କହିବାକୁ କେ ଅଛୁ ସାମରଥା ।
କରନ୍ତି ତର୍ଜନ ଗରଜନ ରଣଷଣ୍ଡା
ପିଟନ୍ତି ବୀରେ ଯେ ହୋଇଯାନ୍ତି ମସୀଗୁଣ୍ଡା ।
ତିନକୋଟି ଅଶ୍ୱ ସାତ ଅକ୍ଷୌହିଣୀ ବଳ
ଏକା ଭୀମସେନ ମାରି ଦେବେ ଯମଆଳ ।
ମରନ୍ତେ ଶେଷ ହୋଇଣ ଗଲେ ସର୍ବ ବୀର
ରଣ ରଙ୍ଗେ ନବାରିଲେ ଏକା ବୃକୋଦର ।
ରଣ କରୁ କରୁ ଦବା ହେଲା ଅବସାନ
ମନ୍ଦ ମନ୍ଦରେ ବହିଲା ଦକ୍ଷିଣା ପବନ ।
ଦଳ ଦଳ ହୋଇ ପକ୍ଷୀ କରିଣ କାକଳି
ନିଜ ଆବାସକୁ ସର୍ବେ ଯାଉଛନ୍ତି ଚଳି ।
ଗୋରୁପଲ ଘେନି ଗୃହେ ଚଳିଲେ ଗୋପାଳେ
ଧରଣୀ ମଣ୍ଡିତ ହେଲା କାଳିଆ ଦୁକୂଳେ ।
ବୀରମାନେ ଅସ୍ତ୍ର ସବୁ କରିଲେ ସଞ୍ଚିତ
ଦୁର୍ଯ୍ୟୋଧନ ସତାଣୋଇ ଭାଇ ହେଲେ ହତ
ସମସ୍ତଙ୍କୁ ମାରି ଭୀମ କରିଲେ ଏକାଠି
ତା ଉପରେ ତା ଉପରେ ଲଦି ଗୋଟିଗୋଟି ।
ଅଯୁତେକ ରଥ ପାଞ୍ଚ ଅଯୁତ ଯେ ହସ୍ତୀ
ତିନକୋଟି ଅଶ୍ୱ ସାତଷଉଣୀ ପଦାତି ।

କର୍ଣ୍ଣ ସେନାପତି ହେବା ପ୍ରଥମ ଦିନରେ
ଏତେକ କୌରବ ସୈନ୍ୟ ଗଲେ ଯମପୁରେ ।
ଆଦିତ୍ୟ ଦେବତା ମେରୁ ଉହାଡ଼େଣ ରହେ
ଦୁଃଶାସନ ଘେନି ପଳାଇଲେ କୁରୁରାୟେ ।
ଦଣ୍ଡଭଗ୍ନ ଦେଖି ଭୀମ ପଛରେ ଗୋଡ଼ାନ୍ତି
ଏତେ ସୈନ୍ୟ ମାରି ମଧ୍ୟ ତୃପତ ନୁହନ୍ତି ।
ଶ୍ରୀକୃଷ୍ଣ ବୋଇଲେ ରହ ରହ ଭୀମସେନ
ଆଜ ସମରେ ମଲା କି ବୀର ଦୁଃଶାସନ ।
ଡାକ ଶୁଣି ଭୀମସେନ ଲେଉଟି ଅଇଲେ
ଦୁର୍ଯ୍ୟୋଧନ ନିରାପଦେ ତହୁଁ ପଳାଇଲା ।
ଭୀମ ବୋଇଲେ ମରିଲେ କେତେ ଭାଇ ଆଜ
କହି ନ ପାରିବ ମୁହିଁ ସେ କଥାକୁ ହେଜ ।
କଳିଙ୍ଗସେନକୁ ମାରି ମତ୍ତ ହେଲା ଘୋଳ
କାଦମ୍ବରୀପାନେ ଯେହ୍ନେ ହୁଅନ୍ତି ବାଭୁଳ ।
କାହାକୁ ମାଇଲି କଏ ମଲା କି ନ ମଲା
ଦୁଃଶା ଅଛି କି ମରିଛି ଜଣା ନ ପଡ଼ିଲା ।
ସମୟ ତ ଆଉ ନାହିଁ ହେଲାଣି ଅଘାତ
ଗୃଲ ଶବ ଖୋଜି ଏବେ ବୁଝିବା ତା ତତ୍ତ୍ୱ ।
ଶୁଣି ବାସୁଦେବ ତହୁଁ କରିଲେ ବିଜୟ
ସତାଣୋଇ ଭାଇ ଗଣି କରିଲେ ନିଶ୍ଚୟ ।
ଶ୍ରୀକୃଷ୍ଣ ବୋଇଲେ ଦୁଃଶାଂ ମରିନାହିଁ ଆଜ
ଶୁଣି ଭୀମ ବୋଇଲେ ହେ ଶୁଣ ଦେବରାଜ ।
କେମନ୍ତେ ଦ୍ରୌପଦୀ ମୁଖ ଆଜ ମୁଁ ଚାହିଁବି
ତାହାର ଝିଙ୍ଗାସବାଣୀ ସହି ନ ପାରିବି ।
ଦୁଃଶା ମୃତ୍ୟୁ ଶୁଣିବାକୁ ଥିବ ବାଟ ଚାହିଁ
ତାହାର ଆଗରେ ପ୍ରଭୁ କି କହିବି ଯାଇଁ ।
ଆଜ ଏ ରଣ ଭୂଇଁରେ ରହିବି ନିଶ୍ଚୟ
ଗୃହଭାଇ ଘେନି ବିଜେ କର ଦୟାମୟ ।
ତାହା ଶୁଣି ବାସୁଦେବ କଲେକ ଉତ୍ତର
ଅବହିତ ପ୍ରତିଜ୍ଞାକୁ କଲ ବୃକୋଦର ।
ଆଜ ଯେବେ ପଡ଼ିଥାନ୍ତା ବୀର ଦୁଃଶାସନ
ଦ୍ରୌପଦୀର ମନୋବାଞ୍ଛା ହୁଅନ୍ତା ସମ୍ପୂର୍ଣ୍ଣ ।
ତୁମ୍ଭର ଶହେ କଥାରେ ଅଧେ ଥାଏ ମିଛ
କିବା କଥାପାଇଁ ତୁମ୍ଭେ ଭାବିତ ହେଉଛ ।
ତୁମ୍ଭେ ଇଚ୍ଛାକଲେ ମେରୁ କରିପାର ଚୂର
ତୁମ୍ଭ ନଖାଘାତେ ମସ୍ତ ହୋଇବ ବିଦାର ।

ଦୁଃଶାସନ ମରିବାର କେଉଁ ଚୂରକଥା
କାଲି ମାରିବ ତାହାକୁ ଚିନ୍ତା କର ବୃଥା ।
ଏମନ୍ତେ ଭୀମସେନଙ୍କୁ ବହୁତ ବୁଝାଇ
ବାହାରିଲେ ହରି ସଙ୍ଗେ ଭୀମସେନ ନେଇ ।
ପାଣ୍ଡବେ ସମସ୍ତେ ସୈନ୍ୟ ଘେନି ସଙ୍ଗତରେ
ଜୟ ପତାକା ଉଡ଼ାଇ ବାହାରିଲେ ଖରେ ।
ବୀର ତୂର ଶଙ୍ଖ ଆଦି ଆଗରେ ବାଜଇ
ବାରୁଣା ନଗରେ ସର୍ବେ ପ୍ରବେଶିଲେ ଯାଇ ।
ଅର୍ଘ୍ୟଘେନି ଯାଜ୍ଞସେନୀ ଚାହିଁଥିଲେ ପଥ
ନନ୍ଦଘୋଷ ଉତ୍ତରନ୍ତେ ପ୍ରଭୁ ଯଦୁନାଥ ।
ଶବ୍ଦ ଜୟ ପତାକା ସେ ରଥର ଉପରେ
ବାଜେ ବୀର ତୂର ଶଙ୍ଖ ଅତି ପ୍ରତାପରେ ।
ପ୍ରଥମେ ତାହାଙ୍କୁ ଅର୍ଘ୍ୟ କରିଣ ପ୍ରଦାନ
ପୁଚ୍ଛିଲେ ଏତେ ବିଳମ୍ବ ଆଜି କି କାରଣ ।
କାହାକୁ ସମରେ ଆଜି କରିଲ ନିହତ
ସେହିକଥା କହି ମନ କର ମୋ ତୃପତ ।
ଶ୍ରୀକୃଷ୍ଣ ବୋଇଲେ ଅର୍ଘ୍ୟ ମୋତେ ଗୋନଦେଇ
ତୁମ୍ଭଙ୍କୁ କାରଣ କଲେ ଧର୍ମେ ହିଅ ନେଇ ।
ଦୁର୍ଯ୍ୟୋଧନ ସତାଶୋଇ ଭାଇଙ୍କୁ ସମରେ
ଆଜି ମାରି ପେଷିଛନ୍ତି ଶମନ ନଗରେ ।
ଆବର କଳିଙ୍ଗସେନ ନୃପତି ସହିତେ
ନବକ୍ଷୌଣୀ ହସ୍ତୀ ସାତକ୍ଷୌଣୀ ବଳ ଏତେ
ସମସ୍ତଙ୍କୁ ଗଦାଘାତେ ଦେଲେ ସେ ଉଡ଼ାଇ
ବାକି ଦୁର୍ଯ୍ୟୋଧନ ଦୁଃଶା ରହିଛନ୍ତି ଜୀଇଁ ।
ରଜନୀ ହୁଅନ୍ତେ ଦୁହେଁ ପଳାଇଲେ ଲୁଚି
ତେଣୁକରି ଦୁହିଙ୍କର ଜୀବନ ରହିଛି ।
ଆଜି ରଣେ ପଡ଼ିଥିଲେ ବୀର ଦୁଃଶାସନ
ପଖାଳି ଥାଅନ୍ତେ ତୁମ୍ଭ କେଶ ଭୀମସେନ ।
ତାହା ହେଲେ ସରିଥାନ୍ତା ଆଜି ତୁମ୍ଭ ଦୁଃଖ
ଶୁଣି ଯାଜ୍ଞସେନୀ ହୋଇ ବହୁତ ବିମୁଖ ।
ବୋଇଲେ ହେ ଦୟାମୟ କେତେ ବାଳସୁତ
ସମର ମଧ୍ୟେ ଅଦ୍ୟାପି ଅଛନ୍ତି ଜୀବିତ ।
ମୋର ଭାଗ୍ୟଦୋଷେ ସିନା ଅଭିମନ୍ୟୁ ପୁଅ
ଘଟୋତ୍କଚ ଘଟକାଦ ରଣେ କଲେ କ୍ଷୟ ।
ମୋର ପିତାଙ୍କର ହେଲ ସମସ୍ତଙ୍କ ଛେଦନ
ଏମାନଙ୍କୁ ମରାଇଣ ପ୍ରାଙ୍କ ବୀରପଣ ।

ଏ ପାଞ୍ଚଭାଇ ମୂର୍ଖଙ୍କୁ ଟିକେ ଲଜ ନାହିଁ
ବଡ଼ ବଳୀ ବୋଲି ମନେ ଥାନ୍ତି ଗର୍ବ ବହି ।
ଭୀଷ୍ମ ଶରଶଯ୍ୟା କରେ ଭୂରିଶ୍ରବା ହତ
ଜୟଦ୍ରଥଙ୍କୁ ମାଇଲେ ଭଉଣୀର ନାଥ ।
ଦ୍ରୋଣଗୁରୁଙ୍କୁ ମାରିଣ କଲେ ଗୁରୁଦ୍ରୋହ
ସତାଶୋଇ ଭାଇ ଯେହୁ ଅଟନ୍ତି ନିର୍ଦ୍ଦୋଷ ।
ନିର୍ଦ୍ଦୋଷୀ ମାରିବା ପାଇଁ ହୋଇଲ ଉଦ୍ୟତ
ଦୋଷୀମାନେ ଅଦ୍ୟାବଧି ଅଛନ୍ତି ଜୀବିତ ।
ଦେଖ ଶକୁନି ଅଟନ୍ତି କେଡ଼େ ଦୁରାଚାର
ପଶା ଖେଳାଇ ଜିଣିଲ ରାଜ୍ୟ ଏହାଙ୍କର ।
ପରିଶେଷେ ବସାଇଲ କୁରୁସଭା ତଳେ
ଏ ସକଳେ ଭୃତ୍ୟପ୍ରାୟେ ହୋଇଲେ ସେକାଳେ
ସିଂହାସନେ ଦୁର୍ଯ୍ୟୋଧନ ବସି ଆଜ୍ଞାଦେଲ
ମୋର ବାଳ ଧରି ଦୁଃଶା ଘରୁ ଘେନିଗଲ ।
ଯେତେକ କଟୁବଚନ କହିଛି ପାମର
ପରେ ବିବସନ କଲ ସେ ମୂରୁଖ ଚୋର ।
ଏମନ୍ତ ଯେ ଦୋଷୀମାନେ ଜୀବିତ ଅବଧି
ନିର୍ଦ୍ଦୋଷୀ ଯେତେକ ତାଙ୍କୁ ଅଛନ୍ତି ଏ ବଧି ।
ଶୃଗାଳମାନଙ୍କୁ ମାରି ଦେଖାଇଲେ ଠାଣି
ସମର୍ଥ ଲୋକଙ୍କୁ ଡରି ଭଙ୍ଗଦେଲେ ରଣି ।
ସିଂହବୋଲି ଏହାଙ୍କୁ ମୁଁ ଥିଲି ଯେ ବିଚାରି
ଜାଣିଲି ଶୃଗାଳଠାରୁ ହୀନ ପଶୁପରି ।
ନ ଜାଣି ସତେଣୀ ମୁହିଁ କପା କଲି ପଣ
ଏବେ ହୀନଦାସୀ ସଙ୍ଗେ ସରି ହେଲି ଜାଣ ।
ମୋତେ କହିଥିଲେ ଦମ୍ଭେ ଏହି ଭୀମସେନ
ଦୁଃଶା ଭୁଜରକ୍ତେ କେଶ କରିବ ବନ୍ଧନ ।
ସତପ୍ରାୟ ମଣି ମୁହିଁ କରିଥିଲି ଆଶ
କେଶ ନ ବାନ୍ଧିଲି ତେଣୁ ପନ୍ଦର ବରଷ ।
କୃଷ୍ଣବୋଲି ଷଣ୍ଢ କୁଳେ ଏହା କି ହୋଇଛି
ସ୍ୱାମୀ ଥାଉଁ ଥାଉଁ ଭାର୍ଯ୍ୟା ଲଜ୍ଜାରେ ମରୁଛି ।
ଶୁଣି ଭୀମସେନ ତାଙ୍କୁ ଦେଲେକ ଉତ୍ତର
ଆଉ ହିଂସାପ ନ କର ଆଗୋ ରମାବର ।
କାଲି ନିଶ୍ଚୟେ ତୁ କେଶ କରିବୁ ବନ୍ଧନ
ଏଥିରେ କିଛିହିଁ ଆଉ ନ ବିଚାର ଆନ ।
ଦୁଃଶାସନ ବେନିଭୁଜ କାଲି ଉପାଡ଼ିବି
ଏହା ନ କଲେ ଅନଳ ଜାଳି ମୁଁ ମରିବି ।

ଆଜ ନଷ୍ଟେଁ ସଖି ତୋର ପୂରିଥାନ୍ତା ଆଶ
ଯେ ଦୁଃଶାକୁ ଖୋଜି ଖୋଜି ଦିନ ହେଲା ଶେଷ
ଏ କଥା ଶୁଣି କହିଲେ ଦ୍ରୁପଦ କୁମାରୀ
ତିନିବାର ସତ୍ୟ କର ଅଗ୍ନି ଛୁଇଁକରି ।
ତିନିବାର ସତ୍ୟ କଲେ ବୀର ବୃକୋଦର
କାଲି ନିଶ୍ଚୟ ତୋ ଦୁଃଶା କରିବି ସଂହାର ।
ପୁଣି ଭୀମକୁ ବୋଲନ୍ତି ଦ୍ରୁପଦ ଦୁଲାଳୀ
ଦୁଃଶା ନ ମଲେ ମରିବି ଜାଳି ଅଗ୍ନି ଜାଳି ।
ଏହି ପରକାରେ ହୋଇ କଥୋପକଥନ
ସକଳେ ପ୍ରବେଶ ହେଲେ ନିଜ ନିକେତନ ।
ନାନାଦି ଉତ୍ସବ କଲେ ଜଇନ୍ତା ନଗରେ
ନିଶି ଯାପନ କରିଲେ ଅତି ଆନନ୍ଦରେ ।
ନମସ୍ତେ ଶ୍ରୀଜଗନ୍ନାଥ ଜଗତ ତାରଣ
ନମସ୍ତେ ଶ୍ରୀବାସୁଦେବ କମଳଲୋଚନ ।
ସଂସାର ମୋହ ମାୟାରେ ପଡ଼ି ନିରନ୍ତର
ସର୍ବଦା ବୁଡ଼ି ମରୁଛି ଶାନ୍ତି ନାହିଁ ମୋର ।
ବେଳ ଥାଉଁ ଥାଉଁ ମୋତେ ସୁଦୟା କରିଣ
ମୋହର ଅଇର ସୁର ଚହରେ ନିବେଦଣ ।
ସୁପଥକୁ ନେଇ ତୁମ୍ଭ ଦାସ ଦାସ କର
ଶାରଳା ଦାସ ମାଗଇ ଏହା ନିରନ୍ତର ।

## ଦୁର୍ଯ୍ୟୋଧନର ସତାଣୋଇ ଭ୍ରାତୃ ବଧରେ ସତାଣୋଇ ବଧୂ, ଧୃତରାଷ୍ଟ୍ର ଓ ଗାନ୍ଧାରୀର ଶୋକ

ଅଗସ୍ତିଙ୍କୁ ପଚାରିଲେ ବଳିଙ୍କ ରାଜନ
ଆହେ ମୁନି ଘେନା କର ମୋର ନିବେଦନ ।
ଦୁର୍ଯ୍ୟୋଧନ ଦଣ୍ଡଭଗ୍ନ ହୋଇ ପଳାଇଲେ
ଧୃତରାଷ୍ଟ୍ର ପୁତ୍ରଶୋକେ କି କି କଥା କଲେ ।
ସେହି କଥା କହି ମୋର ମନ କର ତୋଷ
ଶୁଣି ଅଗସ୍ତି କହନ୍ତି ଶୁଣ ହେ ନରେଶ ।
ଦୁର୍ଯ୍ୟୋଧନ ସୈନ୍ୟସବୁ କାଳମୁଖେ ଦେଇ
ରାତ୍ରି କାଳେ ହସ୍ତିନାରେ ପ୍ରବେଶିଲା ଯାଇ ।
ବଧୂମାନେ ପରସ୍ପରେ ପାଇ ସମାଚାର
ଅନ୍ତଃପୁରରୁ ସକଳେ ହୋଇଲେ ବାହାର ।
ଆପଣା ଆପଣା ସ୍ୱାମୀ ଗୁଣକୁ ବାଛିନ
କାନ୍ଦିଲେ ଅତି ଉଚ୍ଚରେ କମ୍ପାଇ ମେଦିନୀ ।
ହସ୍ତିର ସୁବର୍ଣ୍ଣଚୂଡ଼ ମସ୍ତକରେ କୋଡ଼ି
ଧୂସରିତ ହୋଇ ସର୍ବେ ହେଲେ ଗଡ଼ାଗଡ଼ି ।
କେହି ନାରୀ ପତିଶୋକେ ହୋଇଣ ବିହ୍ୱଳ
ସ୍ୱାମୀକୁ ଡାକଇ ନାଥ ଆସି ଧର ତୋଳ ।
ଏ ଦାସୀର ସବୁକଥା ମନରୁ ପାଶୋରି
କାହିଁ ଚାଲିଗଲ ଏବେ ଆସ ବେଗକରି ।
ପୁଣି କେ ପତିବିହୀନା ହୋଇ ସଂଜ୍ଞାହୀନ
ସ୍ୱାମୀ ବୋଲି ଅନ୍ୟ ନାରୀ କରେ ଆଲିଙ୍ଗନ ।
ଏହିପରି ସର୍ବବାଳୀ କରି କୋଳାହଳ
ରାଜା ସମୀପେ ଚଳିଲେ ହୋଇ ଏକଠୁଳ ।
ବୋଇଲେ ମୂଳ କାରଣ ସିନା ଚକ୍ରବର୍ତ୍ତୀ
ବିଧବା କରି ରଖିଲେ ଅକ୍ଷୟ କୀରତି ।
ଭାଇମାନଙ୍କୁ ମରାଇ କେମନ୍ତେ ଅଛନ୍ତି
ନିର୍ଲଜ ବଦନ ଘେନି କାହାକୁ ଦେଖାନ୍ତି ।
କୃଷ୍ଣ ବିଜେ କରିଥିଲେ ମଧ୍ୟସ୍ଥ ପଣରେ
ଜଣ ଜଣଙ୍କୁ କହିଲେ ସେବକ ପ୍ରକାରେ ।
ପାଞ୍ଚଖଣ୍ଡ ପଡ଼ା ଦିଅ ବୋଲିଣ ମାଗିଲେ
ଗଉଡ଼ ହାଉଡ଼ କହି ତାଙ୍କୁ ତଡ଼ିଦେଲେ ।
ପ୍ରତିଜ୍ଞା କରି କହିଲେ ସମର କରିବ
ବିନା ଯୁଦ୍ଧରେ ମୃତ୍ତିକା ଟିକିଏ ନ ଦେବ ।
ପୁଣି ତାହାଙ୍କୁ ଅନେକ ଦେଇ ଅପମାନ
ଜୀବନ ନେବାର ପାଇଁ କରିଲେ ଯତନ ।
ମାୟାଧର ପୁରୁଷ ସେ କଲେ କୂଟମତି
ତେଣୁ ଲକ୍ଷ୍ମୀ ଘେନିଗଲେ ସରିଲ ସମ୍ପତି ।
ଶକୁନି ବଂଶ ମାଇଲେ ରଖି ବନ୍ଦିଘରେ
ସେହି ଆମ୍ଭର ବଂଶକୁ ମାରେ କୌଶଳରେ ।
ଧିକ ସେ ପାଣ୍ଡବଗଣ ଟିକେ ନାହିଁ ଜ୍ଞାନ
ନିର୍ଦ୍ଦୋଷୀ ମାରନ୍ତି ରଖି ଖଳଙ୍କ ଜୀବନ ।
ଆମ୍ଭ ସମସ୍ତଙ୍କୁ ବୃଥା କରାଇଲ ରାଣ୍ଡି
କେଉଁ ସୁଖ ଲାଭ କଲ ଧରି ତୁମ୍ଭ ପିଣ୍ଡି ।
ଧିକ ତୁମ୍ଭର ଶରୀର ମାଉଁସ ମିଳାଉ
ମୂର୍ଦ୍ଧା ଫାଟିଯାଉ ଆଉ ଦେହ ଗୃଧ୍ର ଖାଉ ।
ଆମ୍ଭ ଦଶା ଭୋଗ କରୁ ଭାନୁମତୀ ରାଣୀ
ଏହା କହି ମୁଣ୍ଡକୋଡ଼ି କାନ୍ଦନ୍ତି ତରୁଣୀ ।
ଏ ସକଳ କଥା ଶୁଣି ରାଣୀ ଭାନୁମତୀ
ମାନଗୋବିନ୍ଦ ପାଶକୁ ଚଳିଲେ ତଡ଼ିତ ।

ବୋଇଲେ ହେ ପ୍ରାଣନାଥ କୁରୁକୁଳସାଇଁ
ସମରେ ପଡ଼ିଲେ ଆଜ ସତାଶୋଇ ଭାଇ ।
ତାହାଙ୍କ ସଙ୍ଗରେ ମଲେ ବହୁତ ଯୋଦ୍ଧାଏ
ରହିଲେ ଶକୁନି କର୍ଣ୍ଣ ଦୁଃଶାସନ ବୀରଏ ।
ଏ ତିନିଙ୍କୁ ଘେନି ରଣ କରିବ କପରି
ଯାହା ଉଚିତ ହୁଅଇ କର ତା ବିଚାରି ।
ଏକାଳେ ସଞ୍ଜୟ ବୋଲେ ଶୁଣ କୁରୁରାଣ
ମାଇଲା ତୋ ସତାଶୋଇ ପୁତ୍ର ଭୀମସେନ ।
ସଞ୍ଜୟ ମୁଖରୁ ରାଜା ଏ ବଚନ ଶୁଣି
ପଡ଼ିଲା ସେ ବଜ୍ରଘାତ ପ୍ରାୟ ନୃପମଣି ।
ଅତ୍ୟନ୍ତ ବିକଳ ହୋଇ କାନ୍ଦେ ଧୃତରାଷ୍ଟ୍ର
ବୃଦ୍ଧକାଳେ ବିହି ମୋତେ ଦେଲୁ ପୁତ୍ରକଷ୍ଟ ।
ଆରେ ଆରେ ବାବୁ ମୋର ଅନ୍ଧର ଲଉଡ଼ି
ଭୀମହାତେ ମରିବାକୁ ଥିଲ ତୁମ୍ଭେ ବଢ଼ି ।
ବଜ୍ରାଘାତ ପ୍ରାୟ ମୋହେ ପଡ଼ିଲେ ଗାନ୍ଧାରୀ
କାନ୍ଦିଲେ ପୁତ୍ରମାନଙ୍କ ନାମକୁ ଉଚ୍ଚାରି ।
ବିଦୁରଙ୍କୁ ଚାହିଁ କାନ୍ଦି ରାଜା ଧୃତରାଷ୍ଟ୍ର
ବୋଇଲେ ତୋ ବୋଲ ଏଡ଼ି ଲଭିଲି ଏ କଷ୍ଟ ।
ତୋ କହିବା କଥା ଯେବେ ଆଗୁ କରିଥାନ୍ତି
ତେବେ କି ଏ ବୃଦ୍ଧକାଳେ ଏ ଦଶା ଲଭନ୍ତି ।
ଏହା କହି ଦୁର୍ଯୋଧନ ଆଣିଲେ ଡକାଇ
ବୋଇଲେ ଦୁଃଶାକୁ ଘେନିଯାଅ ତୁ ପଳାଇ ।
ଏକ୍ଷଣି ଏଠାରେ ନାହିଁ ଶତ୍ରୁ ଚକ୍ରବର୍ତ୍ତି
ଉପଯୁକ୍ତ ବେଳା ଅଟେ ପଳାରେ ନନ୍ଦନ ।
ମୋର ବୋଲକରି ବାବୁ ପଳା ତୁ ବହନ
ବଂଶରକ୍ଷା ହେବ ତୋର ରହିବ ଜୀବନ ।
ବିଦୁର ବୋଇଲେ ତୁମ୍ଭେ ଶୁଣ ନରନାଥ
ଏତେବେଳକୁ ଏ କଥା କରିବ ବ୍ୟକତ ।
ଆଗେ ଯେବେ ଦେଇଥାନ୍ତ ପାଞ୍ଚଖଣ୍ଡ ପଡ଼ା
ତେବେ ଲଭନ୍ତ କି ପୁତ୍ରକଷ୍ଟର ଏ ପୀଡ଼ା ।
ଏତେବେଳେ ପାଞ୍ଚଖଣ୍ଡ ପଡ଼ା ଯେବେ ଦେବ
ତେବେ ତୁମ୍ଭର ନିଶ୍ଚୟ ବଂଶ ରକ୍ଷାହେବ ।
ତାହା ଶୁଣି ଧୃତରାଷ୍ଟ୍ର କରିଲେ ଉତ୍ତର
ଯା ଛଡ଼ା ଆନ ଉପାୟ ନାହିଁରେ ବିଦୁର ।
କୃଷ୍ଣଙ୍କୁ କହି ସମର ସ୍ଥଗିତ କରାଅ
ନାହିଁ ତ ବୁଡ଼ିଲା ବଂଶ ବେଗକରି ଯାଅ ।

ଏହା ଶୁଣି କହିଲେ ବିଦୁର ଧୀରମତି
ଏବେ ଆଜ୍ଞାଦିଅ ଯିବି ଆହେ ଚକ୍ରବର୍ତ୍ତୀ ।
ପୁଣ ପ୍ରୀତି କରାଇବି ପାଣ୍ଡବ ସଙ୍ଗରେ
ଦୟା ରଖିଥାନ୍ତି ସଦା ଶ୍ରୀକୃଷ୍ଣ ମୋଠାରେ ।
ପାଣ୍ଡବେ ମୋର କଥାରୁ ନୋହିବେ ବାହାର
ଦ୍ରୌପଦୀ ପ୍ରତିଜ୍ଞା ପରେ କରିବା ବିଚାର ।
ଶୁଣି ଶକୁନି କହଇ ମନେ ରଖି କୁଟି
ଆଗହୁଁ ନ କର ଏବେ ହୁଅ ଛଟପଟ ।
ପ୍ରଥମରୁ ସର୍ବେ ଥିଲ ହୋଇଣ ନୀରବ
ବିଚାରିଲେ ଅକ୍ଳେଶରେ ମରିବେ ପାଣ୍ଡବ ।
ଏବେ ଯହୁଁ ଆସି ଦେଲା ବିପରୀତ ଫଳ
ତହୁଁ ମିତ୍ରତା ପାଇଁକି ହେଉଛ ବାଉଳ ।
ସବୁତ ଗଲଣି ବୁଡ଼ି ଆଉ ଅଛୁ କିସ
ଏବେ ମିତ୍ରପଣ କରି ଲଭିବ କି ଯଶ ।
ଏମନ୍ତ ଶୁଣି ବୋଇଲେ ରାଜା ଦୁର୍ଯୋଧନ
ଏତେବେଳେ ମିତ୍ରପଣ ନାହିଁ ପ୍ରୟୋଜନ ।
ମାନ ଅଗ୍ନିରେ ସର୍ବଦା ପୋଡ଼ଇ ମୋ ଚିତ୍ତ
ବଂଶ ବୁଡ଼ାଇ ବଞ୍ଚିବା ନୁହଇ ଉଚିତ ।
ଏ ସକଳ କଥା ମୋତେ ଆଉ ନ ରୁଚଇ
ଜୀବନ ରଖିବି କିପାଁ ମହାପାପୀ ହୋଇ ।
ଶ୍ରୀକୃଷ୍ଣ ଛାମୁରେ ପଣ କରିଛୁ ଏମନ୍ତେ
ସମର କରିବି ପ୍ରାଣ ଥିବା ପରିଯନ୍ତେ ।
ପୁଣି ବୋଲେ ମୋ ପ୍ରାଣକୁ ହେଉ ଶତଧିକ
ସମସ୍ତ ମରଇ ଜୟ କରିବି ମୁଁ ଏକ ।
ଏମନ୍ତ କହି କ୍ରୋଧରେ କମ୍ପାଇ ଶରୀର
ବୋଇଲେ ମୁଁ ନ ଶୁଣିବି ବଚନ କାହାର ।
ଆବର କରିବି ରଣ ନ ହୋଇବ ଆନ
ମୋ ଭାଲପଟ୍ଟରେ ଯାହା ଥିବଟି ଲିଖନ ।
ଯେଉଁମାନଙ୍କରେ ସତ୍ୟ ବଚନ ଅଟଇ
ସେମାନେ ଆସନ୍ତୁ ମୋର ସଙ୍ଗେ ସଜହୋଇ ।
ତା ନୋହିଲେ ଯେ ଯୁଆଡ଼େ ଯାଅ ମୋତେ ଛାଡ଼ି
ମୋର ରାଜ୍ୟ ହତ ହେଉ ଶତ୍ରୁ ହାତେ ପଡ଼ି ।
ଏହା କହୁଁ କହୁଁ ହୋଇ ଅତି କୋପାନଳ
ଦୀର୍ଘ ରଡ଼ିଏ ଛାଡ଼ିଲେ ସାଜ ସୈନ୍ୟବଳ ।
ସୈନ୍ୟ ସାଜ ସୈନ୍ୟ ସାଜ ଡାକ ବାଜିଲାକ
ଇନ୍ଦ୍ରପ୍ରସ୍ଥ ପରିଯନ୍ତେ ଶୁଭିଲା ସେ ଡାକ ।

ଦୁର୍ଯ୍ୟୋଧନ ପାଶେ ଆସି କହେ ଦୁଃଶାସନ
ମୋହର ଶତ୍ରୁ ରହିଲା ଆଜି ଭୀମସେନ ।
ସଭାଗୋଳ ଭାଇଙ୍କୁ ଯେ କରଣ ସହାର
ବର୍ଣ୍ଣିଥାଇଛୁ ବହୁତ ଗାରିମା ତାହାର ।
ଆଜି ତାର ରକ୍ତରେ ମୁଁ କରିବ ତର୍ପଣ
ତେବେ ସୋଦରଙ୍କୁ ମୁହିଁ କରିବ କାରଣ ।
ତାହା ଶୁଣି ଦୁର୍ଯ୍ୟୋଧନ କହନ୍ତି ତଥାର
ଭୀମା ପାଶକୁ ନ ଯିବୁ ବାବୁ ରଣକର ।
ଯେକାଳେ ତୁ ଦ୍ରୌପଦୀକୁ କଲୁ ବିବସନ
ସେକାଳୁ ଦ୍ରୌପଦୀ କେଶ ନ କଲା ବନ୍ଧନ ।
ପ୍ରତିଜ୍ଞା କରିଛି ଭୀମା ତୋ ବାହୁ ରକତେ
ଦ୍ରୌପଦୀ କେଶ ବନ୍ଧନ କରିବ ଯୁକତେ ।
ତେଣୁ କହୁଛିରେ ବାବୁ ନ କର ଗାରିମା
ଭୀମା ରଣ କରୁଥିବ ନ ମାଡ଼ିବୁ ସୀମା ।
ତୋର ପାଇଁ ରହିଅଛି ମୋର ବଡ଼ପଣ
ତୋ ବିହୁନେ ସରିଯିବ ମୋର ସବୁ ତାଣ ।
ତୁହି କେବଳ ଅଟୁରେ ମୋ ସଖା ସୋଦର
ତୋତେ ପ୍ରମାଦ ପଡ଼ିଲେ ସବୁ ଯିବ ମୋର ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ପୁଣି ମାଦ୍ରୀସୁତେ
ସମର କରିବୁ ଯାଇ ଏହାଙ୍କ ସହିତେ ।
ଏହିପରି ଦୁର୍ଯ୍ୟୋଧନ କହନ୍ତି ତଥାର
ଏହିକାଳେ ଶେଷ ହେଲା ଆସି ବିଭାବରୀ
ଜଗନ୍ନାଥ ପଦ୍ମପାଦେ ଦେଇ ଦୃଢ଼ମନ
ଶାରଳାଦାସ କହିଲା ପଦ୍ୟରେ ଲିଖନ ।

---

## କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ଗର୍ଭମଧ୍ୟେ ଅର୍ଜ୍ଜୁନଙ୍କର ବ୍ରହ୍ମାଣ୍ଡ ଦର୍ଶନ

କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଏଥୁଅନ୍ତେ ଯାହାହେଲା ସମର ବିଧାନ ।
ରଜନୀ ହୁଅନ୍ତେ ଶେଷ ଉଦୟ ଭାସ୍କର
ଅସ୍ତ୍ରଘେନି ବାହାରିଲେ କଉରବ ବୀର ।
ସଜହୁଅ ସଜହୁଅ ପଡ଼ିଲା ଡହକ
ସଜହେଲେ ରଥ ଗଜ ଚତୁରଙ୍ଗବଳ ।
ସତଖର୍ବ ଗଜ ତିନି ଅର୍ବୁଦେକ ରଥ
ଏକାର ଛଉଣୀ ଅଶ୍ୱ ଆରୋହି ସହିତ ।
ଭୀରତୁରୀ କାହାଳି ଯେ ନାଗରା ବାଜଇ
ଚଳଲ ପତାକାମାନ ଆକାଶେ ଉଡ଼ଇ ।
ଲକ୍ଷେକ ନରଯୁବତୀ ଘେନି ଅର୍ଘ୍ୟଥାଳି
ଦୁର୍ଯ୍ୟୋଧନେ ବନ୍ଦାଇଲେ ଦେଇ ହୁଳହୁଳି ।
ଦ୍ୱିଜମାନେ ମିଳି ତହିଁ କଲେ ବେଦଧ୍ୱନି
କଲ୍ୟାଣ ବାଞ୍ଛା କରନ୍ତି ସର୍ବ ସିଦ୍ଧମୁନି ।
ଦିବ୍ୟବେଶ ସାଜ ବଜେ ସୂର୍ଯ୍ୟଙ୍କ କୁମର
ମଉହସ୍ତୀ ଠାଣି କଣି ଦିଶନ୍ତି ସୁନ୍ଦର ।
ଶଲ୍ୟଙ୍କୁ ବୋଇଲେ ମୋର ରଥ ଚଳାଅ
ଯହିଁ ନନ୍ଦଘୋଷ ତାହା ଆଗରେ ରଖାଅ ।
ପ୍ରଥମେ କୃଷ୍ଣ ଅର୍ଜ୍ଜୁନ ସମରେ ମାରିବ
ପରେ ଦୁଇ ମାଦ୍ରୀସୁତ ଭୀମକୁ ଦେଖିବ ।
ତୃତୀୟରେ ଯୁଧିଷ୍ଠିର ଶିଖଣ୍ଡୀ ସହିତ
ମାରିଲେ ଭାରତମଲ୍ଲି ହୋଇବ ମୁହିଁତ ।
ଶଲ୍ୟ ବୋଇଲେ ବାଳକ ତୋର ଏ ସ୍ୱଭାବ
ମରିବା ପର୍ଯ୍ୟନ୍ତ ତୁହି ନ ଛାଡ଼ିବୁ ଗର୍ବ ।
କାଳସର୍ପ ସମ ଅଟେ ବୀର ଅରଜୁନ
ତାହାର ଆଗରେ ତୁହି ମଣ୍ଡୁକ ସମାନ ।
ଯେତେବେଳେ ତୁ ଦେଖିବୁ ପାର୍ଥ ନାରାୟଣ
ପଳାଇବୁ ସିଂହ ଭୟେ ହସ୍ତୀର ସମାନ ।
ଶୁଣି କର୍ଣ୍ଣ ବୋଇଲେ ହେ ଶୁଣ ଶଲ୍ୟବୀର
ଦେଖିବ ଯଦି ଯୁଝଣ କେମନ୍ତ ମୋହର ।
ପାଣ୍ଡବଙ୍କ ସୈନ୍ୟ ଆଜି ନ ରଖିବ ଏକ
ରଥରେ ବସି ସକଳ କଥାମୋର ଦେଖ ।
କେବଳ ସଖା ହୋଇଣ ରଥ ଚଳାଦେବ
ପାଣ୍ଡବଙ୍କୁ କେଉଁରୂପେ ରଖିବେ ମାଧବ ।
ତାହା ଶୁଣି ଶଲ୍ୟବୀର ନ ଦେଇ ଉତ୍ତର
ବିଚାରିଲେ କର୍ଣ୍ଣ ବୃଥା କରଇ ଗୁମର ।
ସାରଥି ମାନକ ତାର କି ବଳ ଅଛଇ
ତେଣୁ ବାହାରିଲେ ରଥ ମଣ୍ଡିବାର ପାଇଁ ।
କର୍ଣ୍ଣ ରଥ ମଣ୍ଡାଇଲେ କରିଣ ଯତନ
ଦାଉ ଦାଉ ଦିଶେ ଲାଗି ସୂର୍ଯ୍ୟଙ୍କ କିରଣ ।
ଦ୍ୱିଜମାନେ ମିଳି ବେଦ କରିଲେ ପଠନ
ଶୁଭ ଅନୁକୂଳେ କର୍ଣ୍ଣ ଚଳିଲେ ବହନ ।
ପ୍ରାତଃକାଳେ ରଣକ୍ଷେତ୍ରେ ହୋଇଲେ ପ୍ରବେଶ
ସୈନ୍ୟଘେନି ବାହାରିଲେ କୌରବ ନରେଶ ।

ପୂର୍ବ ଦିଗରେ ପ୍ରକାଶ ହୋଇଲେ ତପନ
ନନ୍ଦିଘୋଷେ ବିଜେକଲେ ବୀର ଅରଜୁନ ।
ସାରଥି ହୋଇ ଶ୍ରୀକୃଷ୍ଣ କଲେ ଶଙ୍ଖଧ୍ୱନି
ସେହିଦିନ ଶୁଭସ୍ନାନ କଲେ ଯାଜ୍ଞସେନୀ ।
ଅଗ୍ନି ଭିତରେ ପଶିଣ ଶରୀର ପଖାଳି
ବାହାର ହୋଇଲେ କରେ ଧରି ଅର୍ଘ୍ୟଥାଳି ।
ଶ୍ରୀ ବାସୁଦେବଙ୍କ ଆଗେ ଅର୍ଘ୍ୟ ଦେଲେନେଇ
ଆଗ୍ରହ ସହିତ ତାହା ନେଇ ଯଦୁସାଇଁ ।
ବୋଇଲେ ଭୀମଙ୍କୁ ଦିଅ ଆନେ କସ କାର୍ଯ୍ୟ
ଦୁଃଶାସନକୁ ନିଶ୍ଚୟ ମାରିବ ସେ ଆଜ ।
ତୁମ୍ଭର ପ୍ରତିଜ୍ଞା ଯାହା କରିବେ ପାଳନ
ମାନ ଉଦ୍ଧାରିବେ ନିଶ୍ଚେ ବୀର ଭୀମସେନ ।
ତାହା ଶୁଣି ଯାଜ୍ଞସେନୀ କରିଲେ ଉତ୍ତର
ଆହେ ଇଚ୍ଛାମୟ ହରି ଯେ ଇଚ୍ଛା ତୁମ୍ଭର ।
ଏ ଭବସାଗରେ ପ୍ରଭୁ ରଖାଅ ଶାରତ
ମୁଁ ତୁମ୍ଭର ଦାସୀ ଅଟେ ଆହେ ରମାପତି ।
ଅସୀମ ବୀରତ୍ୱପଣ ଅଟଇ ତୁମ୍ଭର
ତୁମ୍ଭେ ଏ ଦୁଃଖସାଗରୁ ମୋତେ ପାରିକର ।
ଭୀମ ବୋଇଲେ ଦୁଃଶାର ଉପାଡ଼ିବି ଭୁଜ
ତା ନୋହିଲେ ବିଷ ଖାଇ ମରିବି ମୁଁ ଆଜ ।
ଆନ କଥାରେ ମୋହର ପ୍ରୟୋଜନ ନାହିଁ
କପରି ମରିବ ଦୁଃଶା ଏହାହିଁ ଭାବଇ ।
ଦ୍ରୌପଦୀ ବୋଇଲେ ଆଜ ଦୁଃଶା ଯେ ନ ମଲେ
ନିଶ୍ଚୟ ମରିବ ମୁହିଁ ଜାଣ ଏହା ଭଲେ ।
ଏହି ଶରୀରେ ମୋହର ପ୍ରୟୋଜନ କିସ
ବହୁଦିନୁ ତୁମ୍ଭଙ୍କୁ ମୁଁ କଲି ଯେଣୁ ଆଶ ।
ଯାଅ ଯାଅ ତୁମ୍ଭଙ୍କୁ ଯେ ଧର୍ମ ହେଉ ସାହା
ଯେମନ୍ତେ ଦୁଃଶାର ଉପାଡ଼ ଆଜି ଦୁଇ ବାହା ।
ଭୀମ ବୋଲେ ସପ୍ତଦଶ ଦିନ ହେଲା ରଣ
ଆଜ ଅବଶ୍ୟ ଦୁଃଶାର ହେନିବ ପରାଣ ।
ଯେତେବେଳେ ସହଦେବ ଆସିବ ଝପଟି
ବସିଲ ସ୍ଥାନରୁ ତୁମ୍ଭେ ବେଗେ ଯିବ ଉଠି ।
ତୁମ୍ଭର ବଚନ ସଖି ଆଜ ଫଳୁ ମୋତେ
ଏହା କହି ଅର୍ଘ୍ୟଦେଇ ବସିଲେ ସେ ରଥେ
ଧନୁ କୃଷ୍ଣ ଚତୁର୍ଦ୍ଦଶୀ ଅଟେ ଶୁକ୍ରବାର
ଜ୍ୟେଷ୍ଠା ନକ୍ଷତ୍ରକୁ ବସ୍ତଖନ୍ଦ ସେ ଦିନର ।

ବଷ୍ଟି ନାମରେ କରଣ ଗଣ୍ଡ ନାମେ ଯୋଗ
ଧନୁ ସଙ୍କ୍ରାନ୍ତିର ପନ୍ଦର ଦିନ ଭୋଗ ।
ଉଦୟୁ ଶିରକ ବଳ ଉଦେ ମାରତଣ୍ଡ
ଅମୃତ ଯୋଗ ଯେ କୁମ୍ଭ ଲଗ୍ନ ଦେଢ଼ଦଣ୍ଡ ।
ଗୁରୁ ଦଣ୍ଡ ମଧ୍ୟେ ଯାଇଁ ପ୍ରବେଶ କରୀଟୀ
ଆଠଦଣ୍ଡ କାଳ ବେଳେ କର୍ଣ୍ଣ ତାଙ୍କୁ ଭେଟି
କର୍ଣ୍ଣ ପାର୍ଥ ରଥ ଯହୁଁ ହେଲା ଭେଟାଭେଟି
କର୍ଣ୍ଣଙ୍କୁ ଦେଖି କ୍ରୋଧରେ ଚଳିଲେ କରୀଟୀ ।
ସତାଣୋଇ ଦଳ ଧନୁ କର୍ଣ୍ଣଙ୍କର କରେ
ସହସ୍ର ନାରଚ ଯୋଖି ବିନ୍ଧିଲେ ସେ ଖରେ ।
ତାହା ଦେଖି ଅରଜୁନ କରି କୋପଦୃଷ୍ଟି
ବାବନ ଶରରେ ସବୁ ପକାଇଲେ କାଟି ।
ଅସ୍ତ୍ର ବ୍ୟର୍ଥ ହେବା ଦେଖି ଆଦିତ୍ୟ ନନ୍ଦନ
ବୋଇଲେ ଆରେ ଅର୍ଜୁନ ଶୁଣ ମୋ ବଚନ ।
ବାଳକଗୁଡ଼ାଏ ମାରି ହୋଇଅଛ ଦୋଷୀ
ବୀରଙ୍କୁ ସମରରେ ମୁଁ ବଡ଼ ସାହସୀ ।
ପାର୍ଥ ବୋଇଲେ ତୁମ୍ଭେ ତ ବଡ଼ ପୁଣ୍ୟବନ୍ତ
ଅଧର୍ମୀ ଶକଟବ୍ୟୂହ କରିଲ କେମନ୍ତ ।
ତଉଦବର୍ଷର ମୋର ଅଭିମନ୍ୟୁ ପୁଅ
ତୁମ୍ଭେ ପଶି କରିଇଲ ତାହାକୁ ନିହତ ।
ଧୃତରାଷ୍ଟ୍ର ବିଦୁର ଯେ ପଣ୍ଡୁ ତିନିଭାଇ
ଏକ ପିଅରିହୁଁ ଆନ ଏହାଙ୍କର ନାହିଁ ।
ଭିନ୍ନାଭିନ୍ନ ନୁହନ୍ତି ସେ ଏକ ଆତ୍ମାପରି
ତୁମ୍ଭେ କୂଟ କପଟରେ ହେଲେ ଏତେ ସରି ।
ଦୁଇକୁଳେ ଲଗାଇଲ ତୁମ୍ଭେ ସିନା ବାଦ
ତୁମ୍ଭର ପାଇଁ ଘଟିଲ ଆସି ଏ ପ୍ରମାଦ ।
ହେ କର୍ଣ୍ଣ ଉଭୟ କୁଳ ତୁମ୍ଭେ ବୁଡ଼ାଇଲ
ଏବେ ତ କୁରୁକୁଳକୁ ସମୂଳେ ମାଇଲ ।
ତାହା ଶୁଣି କହୁଅଛୁ କର୍ଣ୍ଣ ମହାବୀର
ଏବେ ଶୁଣରେ ଅର୍ଜୁନ ମୋ କହିବା ଗିର ।
ଆଜ ମୋହର ସମର ଦେଖିବୁ ସାକ୍ଷାତେ
ପଣ୍ଡୁ କୁଳକୁ କେମନ୍ତେ ରଖିବେ ଅଚ୍ୟୁତେ ।
ପଚ୍ଛୁରୁ ପଚ୍ଛୁରୁ ସେହି ମହାବଳୀ କର୍ଣ୍ଣ
ସୂର୍ଯ୍ୟସମ ଶତେ ଶର ବିନ୍ଧିଲା ବହନ ।
ଆକାଶ କର୍ମିଲି ଯେହ୍ନେ ନାରାଚ ଆସନ୍ତେ
ଉପରେ ଶୁଭଇ ଯେହ୍ନେ ପଡ଼ଇ ବର୍ଷାତେ ।

ବାନ୍ଧଣୀ ନାରାଚ ଧରି ବନ୍ଧିଲେକ ପାର୍ଥ
କର୍ଣ୍ଣର ସେ ଶରେ ଶର ହୋଇଲେକ ବ୍ୟର୍ଥ ।
ପୁଣି ପାର୍ଥ କୋପେ ଅସ୍ତ୍ର କରନ୍ତେ ଆଘାତ
ଶଏ ଭେଡ଼ା ଘୁଞ୍ଚିଗଲା କର୍ଣ୍ଣଙ୍କର ରଥ ।
ସାଧୁ ସାଧୁ ଶୁଭିଲେକ ଆକାଶରୁ ବାଣୀ
ଦେବସଭାରେ ପ୍ରଶଂସା କଲେ ବଜ୍ରପାଣି ।
ପଲକମାନଙ୍କେ ଶଲ୍ୟ ରଥକୁ ଆଣନ୍ତି
ଧନ୍ୟ ଧନ୍ୟ ମାମୁଁ ବୋଲି କର୍ଣ୍ଣ ପ୍ରଶଂସନ୍ତି ।
ପୁଣି ବଜ୍ରାବଳି ଶର ମାଇଲେ କପିଷ୍ଠୀ
କର୍ଣ୍ଣରଥ ଶଏଭେଡ଼ା ପୁଣି ଗଲା ହଟି ।
ଶଏନାରାଚ ମାରନ୍ତେ କୋପେ ସୂର୍ଯ୍ୟସୁତ
ଦଶବାଣରେ କପିଷ୍ଠୀ ତାହା କଲେ ହତ ।
ମେଘାଶର ପ୍ରହାରିଲେ ବୀର ଧନଞ୍ଜୟ
ପବନାଶରେ କାଟିଲେ ଆଦିତ୍ୟତନୟ ।
ପନ୍ନଗାଶରକୁ କର୍ଣ୍ଣ ବନ୍ଧିଲେ ପାଲଟି
ଗରୁଡ଼ାଶରେ ତାହାକୁ ଛେଦିଲେ କପିଷ୍ଠୀ ।
କୋପେ ପାର୍ଥ ଶଏ ଶର ପୁଣି ପ୍ରହାରିଲେ
ଏକ ନାରାଚରେ କର୍ଣ୍ଣ କାଟି ପକାଇଲେ ।
ସହସ୍ରେ ନାରାଚ କର୍ଣ୍ଣ ବନ୍ଧିଲେକ ପୁଣି
ପଞ୍ଚବଂଶ ବାଣେ ପାର୍ଥ ପକାଇଲେ ହାଣି ।
ପୁଣି ଶଏଶର ପାର୍ଥ କରନ୍ତେ ଆଘାତ
ହେଳେ ଛେଦି ପକାଇଲେ ସୂର୍ଯ୍ୟଙ୍କର ସୁତ ।
ପୁଣି ଶକତ ମାଇଲେ କର୍ଣ୍ଣ ମହାମତ
ବାବଲଶରେ କାଟିଲେ ପଣ୍ଡୁଙ୍କ ସନ୍ତତ ।
ବାୟୁବ୍ୟ ଶର ମାଇଲେ ବୀରବର ପାର୍ଥ
ଶଏଭେଡ଼ା ଘୁଞ୍ଚିଗଲା କର୍ଣ୍ଣଙ୍କର ରଥ
ହୁହୁଁ ହୁହୁଁ ଶଲ୍ୟ ରଥ ଆଣିଲେ ଉଠାଇ
ପୁଣି ନନ୍ଦିଘୋଷ ଆଗେ ରଖିଲେକ ନେଇ
ଏହି ରୂପରେ ସମର କରନ୍ତେ କପିଷ୍ଠୀ
ବାର ବାର କର୍ଣ୍ଣ ରଥ ଯାଉଥାଏ ହଟି ।
ତାହା ଦେଖି କୋପକରି ସୂର୍ଯ୍ୟଙ୍କ ନନ୍ଦନ
ବଜ୍ରାବଳି ମହାଶର କରେ ଆବାହନ ।
ସାୟକେ ବସାଇ ତାକୁ ଯନ୍ତ୍ରୁ ଦେଲେ ଛାଡ଼ି
ପବନ ଗତରେ ଶର ଆସିଲେକ ମାଡ଼ି ।
ନିବାରି ପାରିଲେ ନାହିଁ ତାକୁ ବୀର ପାର୍ଥ
ସାତ ଭେଡ଼ା ଘୁଞ୍ଚିଗଲା ନନ୍ଦିଘୋଷ ରଥ ।

ଧନ୍ୟ ଧନ୍ୟ ବୋଲି ଶୁଭେ ଆକାଶରୁ ବାଣୀ
ଧନ୍ୟ କର୍ଣ୍ଣ ବୋଲି ଡାକ ଦେଲେ ଚକ୍ରପାଣି ।
ପୁଣି ପାଞ୍ଚଜନ୍ୟ ଧରି ବାଇଲେ ପ୍ରବଳ
ଶଙ୍ଖ କହେ ଧନ୍ୟ କର୍ଣ୍ଣ ଧନ୍ୟ ଭୁଜବଳ ।
ଶ୍ରୀକୃଷ୍ଣ ମୁଖରୁ ଶୁଣି ପ୍ରଶଂସା ବଚନ
ଧନୁଶର ତଳେ ଥୋଇ ଉଭା ଅରଜୁନ ।
ଅସ୍ତ୍ର ପ୍ରୟୋଗ ନ ଦେଖି ଦେବ ଜଗନ୍ନାଥ
କର୍ଣ୍ଣ ଦର୍ପ ଦେଖି ସ୍ଥିର ହୋଇଲୁ କି ପାର୍ଥ ।
ତୋର ଏ ନ୍ୟୂନତା ଦେଖି ଏକ୍ଷଣି ରାଧେୟ
ପାଣ୍ଡବଙ୍କ ସୈନ୍ୟବଳ କରିଦେବ କ୍ଷୟ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ମୋ କଥାକୁ
ସାତଥର ଢୁଞ୍ଚାଇଲି କର୍ଣ୍ଣର ରଥକୁ ।
ପ୍ରତ୍ୟେକ ଥରରେ ଘୁଞ୍ଚେ ଶଏ ଭେଡ଼ାଯାଏ
ମୋତେ ପ୍ରଂଶସା ନୋହିଲ ସେଥିକି ଟିକିଏ ।
ସାତଭେଡ଼ା ମାତ୍ର ଥରେ ଘୁଞ୍ଚିଲା ମୋ ରଥ
ଏଥିକି ଏତେ ପ୍ରଶଂସା କଲ ଜଗନ୍ନାଥ ।
ତାହାର ପ୍ରଶଂସା ଶୁଣି ମୁଁ ଦୁଃଖିତ ହୋଇ
ରହିଲଇଁ ସିନା ଧନୁଶର ତଳେ ଥୋଇ ।
କର୍ଣ୍ଣର ପ୍ରଶଂସା ଶୁଣି କର୍ଣ୍ଣରେ ମୋହର
ପ୍ରାଣ ନ ଯାଇ ରହିଛି ଯାହା ଚକ୍ରଧର ।
ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ରମେଶ
ଦେବତାଙ୍କୁ କୋପକରୁ ନ ଜାଣି ବିଶେଷ ।
ମୋତେ ବୃଥା ଦୋଷଦେଇ ମନେ କରୁ ତାପ
ମୋତେ ଅଗୋଚର ଅଛେ କର୍ଣ୍ଣବୀର ଦର୍ପ
ନ ଜାଣିବା ପଣେ ସିନା ବୋଲ ଧନଞ୍ଜୟ
କର୍ଣ୍ଣର ରଥ କେବଳ ତୂଳାଗଦା ପ୍ରାୟ ।
ମହା ମନ୍ଦରକୁ ଜିଣେ ନନ୍ଦିଘୋଷ ଭାର
ଚଉଦ ସହସ୍ର ବଳେ ବସେ ହନୁବୀର ।
ଦେଖ ନନ୍ଦିଘୋଷ ପୀଡ଼ କେମନ୍ତ ବୃହତ
ସ୍ଥିରମେଘ ରହିଛନ୍ତି ସହିତରେ ଏକତ୍ର ।
ରଥର ଦକ୍ଷିଣ କୋଣେ ପୁଣି ଦେଖ ଯାଇଁ
ଈଶ୍ବର କୁବେର ବେନି ରହିଛନ୍ତି ସହିଁ ।
ନୈଋତ କୋଣକୁ ପୁଣି ଦେଖରେ ଅର୍ଜ୍ଜୁନ
ସ୍ତମ୍ଭ ଭିତରେ ଅଛନ୍ତି ଦେବତା ପବନ ।
ପଶ୍ଚିମ କୋଣକୁ ଦୃଷ୍ଟି କର ରେ ବିଜୟ
ରଥସ୍ତମ୍ଭେ କରିଛନ୍ତି ବରୁଣ ବିଜୟ ।

ସତ୍ୟ ତ୍ରେତୟା ଦ୍ୱାପର ଯୁଗମାନେ ମିଳି
ହୋଇଛନ୍ତି ନନ୍ଦଘୋଷ ରଥରେ ଯୁଆଳି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି କୋଣ
ହୋଇଛନ୍ତି ଅଶ୍ୱଯୋଗ୍ୟ ଦଉଡ଼ି ତୁ ଜାଣ ।
ଶଙ୍ଖପଦ୍ମ ମହାପଦ୍ମ କର୍କୋଟ ତକ୍ଷକ
ବାନ୍ଧଣି ଦଉଡ଼ି ଏହ୍ନ ହୋଇଛନ୍ତି ଦେଖ ।
ପ୍ରଳୟ ଚାରିକୋଟି ଏହି ରଥଘୋଡ଼ା
ଏ ରଥକୁ ବୁଝାଇଲି କର୍ଣ୍ଣ ସାତବେଢ଼ା ।
ଏଥକୁ କର୍ଣ୍ଣ କପାଇଁ ଧନ୍ୟ ନ ହୋଇବ
ବୋଇଲେ ଶଳ୍ୟକୁ ଧନ୍ୟ କଲ ହେ ମାଧବ ।
ପୁଣିହିଁ ବୋଲୁଛି ଦେହେ ପ୍ରାଣ କପାଁ ଅଛି
ପାର୍ଥ ତୋ ମନେ ବିଶେଷ ଭ୍ରମ ଯେ ହୋଇଛି
ଦେଖ ଦେଖ ରହି କୃଷ୍ଣ ବିସ୍ତାରିଲେ ପାଟି
ସପ୍ତ ବ୍ରହ୍ମାଣ୍ଡ ରହିଛି ଦେଖିଲେ କିରୀଟୀ ।
କାହିଁ ନଦୀ କାହିଁ ଗିରି କାହିଁ ବନଘୋର
ଏ ସକଳ ଦେଖି ପାର୍ଥ ହୋଇଲେ କାତର ।
ହିମାଦ୍ରିର ସପ୍ତଶୃଙ୍ଗ ମେରୁ ଯେ ମନ୍ଦର
ଦେଖି ପାର୍ଥ ବିସ୍ମୃରନ୍ତି ରଥ କେଉଁ ଘର ।
ପୁଣି ଦେଖିଲେ ଅର୍ଜୁନ ସପ୍ତଦ୍ୱୀପ ମହୀ
ସାତ ସମୁଦ୍ର ଘେରିଛି ସାତଥର ହୋଇ ।
କାହିଁ ରାମାୟଣ ଯୁଦ୍ଧ ହୁଏ ଭୟଙ୍କର
ରାମଙ୍କ ସଙ୍ଗେ ରାବଣ କରୁଛି ସମର ।
କାହିଁ ଦୁର୍ଗା ସହିତରେ ମହିଷ କୌଣପ
ସମର କରଇ ସୈନ୍ୟ ଘେନଣ ଅମାପ ।
କାହିଁ ଭାରତ ସମର ଅର୍ଜୁନ ଦେଖନ୍ତି
କେତେ କେତେ ମହାରଥୀ ମରି ପଡ଼ିଛନ୍ତି ।
କାହିଁ ଦଶ ଅବତାର ମୂର୍ତ୍ତି ନାରାୟଣ
କୃଷ୍ଣଙ୍କ ଗର୍ଭେ ରହିଛି ସମସ୍ତ ପୂରଣ ।
ଏ ସକଳ ଦେଖି ପାର୍ଥ ରଥରୁ ଓହ୍ଲାଇ
ଶ୍ରୀକୃଷ୍ଣଙ୍କ ପାଦତଳେ ପଡ଼ିଲେକ ଯାଇ ।
ଉଠି ବୋଇଲେ ହେ ନାଥ ତୁମ୍ଭେ ମାୟାଧର
ମୁଁ କାହୁଁ ଜାଣିବି ଛାର ମାନବ ମାତର ।
ଏବେ ମୁଁ ଜାଣିଲି ତୁମ୍ଭ ଦୟା ମୋହଠାରେ
ସଦାଥାଏ କହି ଧନୁ ଧଇଲେ ହସ୍ତରେ ।
ଜୟ କଳାକର ମୁଖ ଶରଣ ପଞ୍ଜର
ଜୟ ହେ ନୀଳାଦ୍ରି ସିଂହ ଦୁଃଖୀ ଦୁଃଖ ହର ।
ଆହେ ପ୍ରଭୁ ଦୟାମୟ ଶଙ୍ଖଚକ୍ର ହସ୍ତ
ତୁରିତେ ଛେଦନ କର ମୋହର ଦୁରିତ ।
ଏ ଭବସାଗରେ ପଡ଼ି କଷ୍ଟେଁ ଗଲି ବୁଡ଼ି
ତୁମ୍ଭ ନାମ ନ ଭଜିଲି ବନେ ହେଲେ ହୁଡ଼ି ।
ସର୍ବଦା ପାପ ପଥରେ ଦିନ ଗଲା ମୋର
କେମନ୍ତେ ତରିବି ଆଉ ଏ ଭବସାଗର ।
ତୁମ୍ଭର ନାମ କେବଳ ସେ ପଥକୁ ଭେଳା
ମୋର ବାଧା ବିଘ୍ନ ଯାହା ଛେଦ ଚକାଡୋଳା
ତୁମ୍ଭ ନାମ ଜପିବାକୁ ଅହର୍ନିଶି ବସି
ଶାରଳା ଦାସ ସର୍ବଦା ହୁଏ ଅଭିଳାଷୀ ।

---

## କର୍ଣ୍ଣ ଯୁଧିଷ୍ଠିରଙ୍କ ଯୁଦ୍ଧ, କର୍ଣ୍ଣଦ୍ୱାରା ଯୁଧିଷ୍ଠିରଙ୍କ ଅପମାନ ଓ କର୍ଣ୍ଣର ଜନ୍ମ ବୃତ୍ତାନ୍ତ

ଏଥି ଉତ୍ତାରୁ ପୁଚ୍ଛନ୍ତି ବଳିଙ୍କରାଜନ
ହେ ଅଗସ୍ତି ମୁନି ଶୁଣ ମୋର ନିବେଦନ ।
ପାର୍ଥ ଧନୁଶର ଥୋଇ ଅଭିମାନୀ ହେଲେ
ଶ୍ରୀକୃଷ୍ଣ ବିଦ୍ଭୁତ ରୂପେ ବୁଝାଇ କହିଲେ ।
ପୁଣି କର୍ଣ୍ଣ କାହାସଙ୍ଗେ କରିଲେ ସମର
ସେହିକଥା ଶୁଣିବାକୁ ଇଚ୍ଛାହୁଏ ମୋର ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସମର ସ୍ଥଳେ ପାର୍ଥକୁ ନ ଦେଖିଣ କର୍ଣ୍ଣ ।
ଯୁଧିଷ୍ଠିର ସମ୍ମୁଖରେ ରଥ ନେଇ କଲ
ବାଛି ବାଛି ଲୁହାଶର ତାହାଙ୍କୁ ମାଇଲ ।
ସେହି ପାଞ୍ଚଗୋଟି ଶର ଅତି ତୀକ୍ଷ୍ଣ ମୁନା
ବାଜନ୍ତେ ଭେଦିଲା ଯାଇ ଯୁଧିଷ୍ଠିଙ୍କ ସେହ୍ଲା ।
ତହୁଁ ଧର୍ମସୁତ ହୋଇ ଅତିଶୟ କ୍ରୁଦ୍ଧ
କର୍ଣ୍ଣର ସଙ୍ଗେ ଆରମ୍ଭ କରିଲେକ ଯୁଦ୍ଧ ।
ପାଞ୍ଚଶର ମାଇଲେ ସେ ଧନୁରେ ବସାଇ
ପୁଣି ନଅଶର ଘେନି ମାଇଲେ ତୁହାଇ ।
ଏମନ୍ତେ କର୍ଣ୍ଣ ନାରାଚ ହୋଇଲା ଛେଦନ
ତହୁଁ ଯୁଧିଷ୍ଠିର ଡାକି ବୋଇଲେ ବଚନ ।
ଆରେ କର୍ଣ୍ଣ ମୋ ହାତରେ ପଡ଼ିଅଛୁ ଆଜ
ତୋର ପାଞ୍ଜି ପୋଛିଲାଣି ନିଶ୍ଚେଁ ଯମରାଜ ।
ଏହା କହି ବିଂଶଶର ପୁଣି ପ୍ରହାରିଲେ
ଦଶ ନାରାଚରେ କର୍ଣ୍ଣ କାଟି ପକାଇଲେ ।

ପୁଣି ଶଏଶର ଧର୍ମ କରିଲେ କ୍ଷେପଣ
ଏକଶର ମାରି କର୍ଣ୍ଣ କଲେ ନିବାରଣ ।
ଦୁଇଶ ନାରାଚ ତହୁଁ ମାରିଲେ ଯୁଧିଷ୍ଠି
ବଜ୍ରବାଣ ମାରି କର୍ଣ୍ଣ ତା କରିଲେ ନଷ୍ଟି ।
ବାବଲ ପଞ୍ଚବାଣ ଯେ ବିନ୍ଧିଲେ ରାଧେୟ
ଆସନ୍ତେ ଛେଦିଲେ ତାହା ଯୁଧିଷ୍ଠିର ରାୟ ।
ପୁଣି ଯୁଧିଷ୍ଠି ବିନ୍ଧିଲେ ତିନି ଶର ଧରି
ଦେଖି ତା ବିନ୍ଧିଲା କର୍ଣ୍ଣ ଶର ଶତେ ପୂରି ।
କୋପେଣ ବିନ୍ଧିଲା ସେହୁ ଅଙ୍ଗଦେଶ ଈଶ
ଯୁଧିଷ୍ଠିଙ୍କ ରଥ ଅଶ୍ୱ ସବୁ ହେଲା ଧ୍ୱଂସ ।
ଧର୍ମର ନନ୍ଦନ ତହୁଁ ହେଲେ ପାଦଗତି
ଧନୁ ଧରି ଯୁଦ୍ଧେ ପୁଣି ନାରାଚ ବିନ୍ଧନ୍ତି ।
ମନରେ କୋପ ବହିଣ ଆଦିତ୍ୟର ସୂନୁ
ପୁଣି ଛେଦି ପକାଇଲେ ଯୁଧିଷ୍ଠିର ଧନୁ ।
ଶୂନ୍ୟହସ୍ତ ହେଲେ ଯହୁଁ ଧର୍ମ ମହାଭାଗ
ପାଦଗତିରେ ଧାଇଁଲେ ଧରିଣ ଖଡ୍ଗ ।
ହାବୁଡା ଶରକୁ କର୍ଣ୍ଣ ପ୍ରହାରିଲେ ଟାଣି
ଯୁଧିଷ୍ଠିରଙ୍କ ଖଡ୍ଗ ପକାଇଲେ ହାଣି ।
ପୁଣି ତୀକ୍ଷ୍ଣ ଶର କର୍ଣ୍ଣ କରନ୍ତେ ପ୍ରହାର
ଅଜ୍ଞାନ ହୋଇ ପଡ଼ିଲେ ଧର୍ମ ଯୁଧିଷ୍ଠିର ।
ତହୁଁ କର୍ଣ୍ଣ ନିଜ ରଥୁ ଅଇଲେ ଓହ୍ଲାଇ
ଯୁଧିଷ୍ଠିରଙ୍କର କେଶ ଧଇଲେ ନିଠାଇ ।
ବାମକରେ ଯୁଧିଷ୍ଠିଙ୍କ କେଶ ଧରିଛନ୍ତି
ଦକ୍ଷିଣରେ ଖଣ୍ଡାଧରି ଉଞ୍ଚାଇ କହନ୍ତି ।
ଆରେ ରେ ଯୁଧିଷ୍ଠି ମୋର ଛାମୁରେ ପଡ଼ିଲୁ
ଜ୍ୟେଷ୍ଠ ହୋଇ ତୁହି ପରା ଦୟା ନ ବହିଲୁ ।
ଆଜି ତୋହର ମୁଣ୍ଡକୁ ପକାଇଲେ କାଟି
ତେବେ କୋଇନ୍ତାର ହେବ ବଡ଼ପୁତ୍ର ଗୋଟି
ଦୁର୍ଯ୍ୟୋଧନ ରାଜାଙ୍କର ହୋଇଲୁ ବିରୋଧୀ
ବଂଶ ବୁଡ଼ାଇ ସାରିଲୁ ସକଳ ସମୃଦ୍ଧି ।
ଏ ରଣ ଭୂମିରେ ତୋର ସମସ୍ତେ ଅଛନ୍ତି
ରଖିବ କେ ମୋ ଆଗରୁ ଅଛୁ କା ଶକତି ।
କୃଷ୍ଣ ଅର୍ଜ୍ଜୁନ ସହିତେ ସମସ୍ତେ ଅଛନ୍ତି
ଡାକ ଡାକ ମୋ ଆଗରୁ କେ ରଖି ପାରନ୍ତି
ଚହକୂଟ ବୁଦ୍ଧିରେ ତୁ ନ ପଡ଼ିଲୁ ଜାଣି
ଟିକ ଟିକ କରି ତୋତେ ପକାଇବି ହାଣି ।

ଏବେ କହୁଅଛୁ ତୋତେ ଶୁଣ ଯୁଧିଷ୍ଠିର
ତୋର ଇଷ୍ଟ ଦେବତାଙ୍କୁ ସୁମରଣା କର ।
ପିତାମାତା ଭାଇବନ୍ଧୁ କର ତୁ ସ୍ମରଣ
ମୋହର ହାତରେ ଆଜି ନିଶ୍ଚେ ତୋ ମରଣ
ଦ୍ୱିଜସୁତରେ ଜନ୍ମ ହୋଇ ଜ୍ୟେଷ୍ଠ ବୋଲାଇଲୁ
ହେଳାଯୁଦ୍ଧ କରନ୍ତେ ତୁ ଗାଲୁ କରୁଥିଲୁ ।
ଏହାକହି ରଙ୍ଗବର୍ଣ୍ଣ ଚକ୍ଷୁ ଦେଖାଇଲା
ପୁଣି ପୁଣି ଯୁଧିଷ୍ଠିର ଚୁଟିକୁ ଝିଙ୍କିଲା ।
ଅତ୍ୟନ୍ତ ଅବଶ ହୋଇ ଧର୍ମଙ୍କ କୁମର
ବିକଳେ ଡାକିଲେ କୁନ୍ତୀମାତା ରକ୍ଷାକର ।
ଧର୍ମ ଦେବତାଙ୍କ ଅଂଶେ ମୋତେ ଜନ୍ମାଇଛୁ
ବିପଦ କାଳରେ ଆସି ସପକ୍ଷ ନୋହୁଛୁ ।
ତୁହି ଥାଉଁ ଥାଉଁ ମାତା ହୋଇଲି ନିରେଖ
ସଙ୍କଟ କାଳରେ ଆସି ରଖିବୁ ତୁ ରଖ ।
ଏମନ୍ତ କହି କର୍ଣ୍ଣକୁ ବୋଇଲେ ସେ ବାଣୀ
ରେ କର୍ଣ୍ଣ କଟୁ ନ କହ ପକା ମୋତେ ହାଣି ।
ମୋର ଆଉ ଅନ୍ୟ ଇଷ୍ଟ ନାହିଁ ବୋଲିଜାଣ
କେବଳ କୋଇନ୍ତା ମାତା ରଖିବେ ଶରଣ ।
ଏମନ୍ତ ବଚନ ଶୁଣି ସୂର୍ଯ୍ୟଙ୍କର ବଂଶ
ସ୍ତମ୍ଭୀଭୂତ ହେଲେ ଆଉ ନ ସ୍ଫୁରିଲା କିଛି ।
କର୍ଣ୍ଣ ସେନାପତି ଯେଣୁ କୁନ୍ତୀଙ୍କ ନନ୍ଦନ
ଭାଗ୍ୟେ ଭଲ ସୁମରିଲେ ରହିଲା ଜୀବନ ।
ଆଗହୁଁ ଜନନୀ ମୋତେ ମାଗିଥିଲେ ବର
ପାର୍ଥଛଡ଼ା ଅନ୍ୟପୁତ୍ର ନ ମାରିବୁ ମୋର ।
ତାହାଙ୍କ ବଚନ ଯେବେ ଅନ୍ୟଥା କରିବି
ମରିବା କାଳରେ ନିଶ୍ଚେ ନରକେ ପଡ଼ିବି ।
କେତେକାଳ ଅବା ମୋର ରହିବ ଜୀବନ
ସେଥିକି ତାଙ୍କ ବଚନ କରିବି ମୁଁ ଆନ ।
ଏବେ ମୁଁ କହୁଛି ତୋତେ ଶୀଘ୍ର ହୋଇପଳା
ଯେମନ୍ତେ ନ ଜାଣୁ ଏହା ଧୃତରାଷ୍ଟ୍ର ବଳା ।
ଯଦ୍ୟପି ଜାଣିବ ସେହି ଏ ସକଳ କଥା
ଆମ୍ଭଙ୍କୁ ମନରେ ସେହି କରିବ ଅହନ୍ତା ।
ଏତେ ବୋଲିକରି ଛାଡ଼ିଦେଲା ତାର କେଶ
ପଳାନ୍ତି ଯୁଧିଷ୍ଠି ଅସମ୍ଭାଳ କେଶବାସ ।
ଆଉ ନ ରହିଲେ ସେହି ସମର ଭୂମିରେ
ପଳାଇଲେ ଇନ୍ଦ୍ରପ୍ରସ୍ଥେ ବିଷମ ଲଜ୍ଜାରେ ।

ଦେଖି ଶଲ୍ୟ ଚମକିଲେ ଆହେ କର୍ଣ୍ଣବୀର
ଏ କି ଅସମ୍ଭବ କଥା ଦେଖିଲି ତୁମ୍ଭର ।
ବହୁତ ପ୍ରତିଜ୍ଞା କରି କହିଲ ବଖାଣି
ତେଣୁ ସେନାପତି କଲେ କୁରୁ ନୃପମଣି ।
ଆଜିଠାରୁ ସରିଥାନ୍ତା ପାଣ୍ଡବ ସମ୍ପଦ
ଯୁଧିଷ୍ଠିରେ ମାରିଦେଲେ ଯାଆନ୍ତା ଆପଦ ।
ପାଣ୍ଡବଙ୍କୁ ଏତେ ସ୍ନେହ ଯଦ୍ୟପି ତୁମ୍ଭର
ଆଉ କାହା ସଙ୍ଗେ ତେବେ କରିବ ସମର
କର୍ଣ୍ଣ ବୋଇଲେ ହେ ଶଲ୍ୟ ଜାଣ ପୂର୍ବକଥା
କୋଇନ୍ତା ଅଟନ୍ତି ମୋର ଗର୍ଭଧାରୀ ମାତା ।
ଅବିବାହୀ କାଳେ କୁନ୍ତୀ ଥିଲେ ପିତାଘର
ମନ୍ତ୍ର ସତ ବୁଝିବାକୁ ଡାକିଲେ ମିହିର ।
ତାହାଙ୍କ ବୀର୍ଯ୍ୟରୁ ମୁହିଁ ହୁଅନ୍ତେ ଉତ୍ପତ୍ତି
ଗୃହକୁ ନ ନେଲେ ମାତା ମନେ ପାଇ ଭୀତି ।
ଏକ ମଞ୍ଜୁଷରେ ମୋତେ ଯତନେ ପୂରାଇ
ନଦୀଜଳେ ମେଲିଦେଲେ ମୁହିଁ ଭାସିଲଇଁ ।
କୁନ୍ତୀ ମୋତେ ଭସାଇଲେ ମନୋହର ବନେ
ଭାସି ଭାସି ଲାଗିଲି ମୁଁ ହସ୍ତିନା ଭୁବନେ ।
ରାଧାଭର୍ତ୍ତା ଯାଇଥିଲେ ନଦୀକୁ ଗାଧୋଇ
ମୋତେ ଜଳରୁ ଆଣିଲେ ମଞ୍ଜୁଷ ଫିଟାଇ ।
କୁନ୍ତଭୋଜ ରାଜା ପୁଣି ଘେନି ସେ କୁମାରୀ
ସୋମବଂଶ ପାଣ୍ଡୁ ସଙ୍ଗେ ଦେଲେ ବିଭାକରି ।
କୁନ୍ତୀଙ୍କ ଦ୍ୱିତୀୟ ପୁତ୍ର ହୁଅନ୍ତେ ଜନମ
ଯୁଧିଷ୍ଠିର ବୋଲିକରି ଦେଲେ ତାର ନାମ ।
ତେଣୁ ବିନାଶିବାପାଇଁ କରନ୍ତେ ମୁଁ ପଣ
ମୋହର ପ୍ରତିଜ୍ଞା କୁନ୍ତୀ ପରୋକ୍ଷେ ଶୁଣିଣ ।
ମୋର ନିକଟକୁ ତହୁଁ କରିଲେ ବିଜୟ
ବୋଇଲେ ପାଣ୍ଡବ ପାଶେ ଆସରେ ତନୟ ।
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ହୋଇବୁ ରାଜ୍ୟରେ
ଭାଇମାନଙ୍କୁ ପାଳନ କରିବୁ ସୁଖରେ ।
ଏ ବଚନ ଶୁଣି ମୁହିଁ କରିଲି ଉତ୍ତର
ମୁହିଁ ଅଟଇ ତୁମ୍ଭର ପ୍ରଥମ କୁମର ।
ଦ୍ୱିତୀୟକୁ ଜ୍ୟେଷ୍ଠନାମ କରିଛ ଅର୍ପଣ
ଯୁଧିଷ୍ଠିରକୁ ମାରିବ ଯେବେ କରି ରଣ
ତେବେ ମୁଁ ତୁମ୍ଭର ଜ୍ୟେଷ୍ଠକୁମର ହୋଇବ
ରାଜ୍ୟ ଚକ୍ରବର୍ତ୍ତୀ ହୋଇ ସୁଖରେ ରହିବ ।

ଏମନ୍ତ ନିଷ୍ଠୁର କଥା କହିଲି ମୁଁ ଯହୁଁ
ଗୁରୁଦକ୍ଷିଣା ମାଗିଲେ କୁନ୍ତୀ ମୋତେ ତହୁଁ ।
ସତ୍ୟକରି ମୁଁ କହିଲି ତାହାଙ୍କ ଛାମୁରେ
ମାଗ ଆଗୋ ମାତା ଯାହା କରିଛ ମନରେ ।
କୁନ୍ତୀ ବୋଇଲେ ତୁ ମୋତେ ଏ ଦକ୍ଷିଣା ଦିଅ
ପାର୍ଥ ବିନା ନ ମାରିବୁ ଆନ ଚାରିପୁଅ ।
ଅର୍ଜୁନ ତୋତେ ବା ମାରୁ ତୁ ବା ତାକୁ ମାର
ଆନ ଚାରିଙ୍କର ଦୋଷ କ୍ଷମା ଦାନକର ।
ସତ୍ୟ ମେଣ୍ଟି ମାଇଲେ ତୁ କଳ ବା କୌଶଳେ
ମାତା ହରଣର ପାପ ହେବ ସବୁକାଳେ ।
ଏମନ୍ତ କହିଣ କର୍ଣ୍ଣ ବୋଇଲେ ଶଲ୍ୟଙ୍କୁ
ଶିରୋଧାର୍ଯ୍ୟ କରିଛି ମୁଁ କୋଇନ୍ତା କଥାକୁ ।
କୁନ୍ତୀ ମାତାଙ୍କ ବଚନ ଲଙ୍ଘିବି କେମନ୍ତେ
ଯୁଧିଷ୍ଠିରେ ଛାଡ଼ିଲି ସତ୍ୟ ରକ୍ଷାର ନିମନ୍ତେ ।
ଶଲ୍ୟ ବୋଇଲେ କୌଣସି ଉପାୟାଦି କରି
ପାଣ୍ଡବେ ଜୟ କରିଲେ କୁରୁ ଗଲେ ହାରି ।
ଏମନ୍ତ ବିଚାର ଯେବେ ଥିଲା ତୋ ମନରେ
କପାଁ କୌରବ ନାଶିଲୁ ବିଶ୍ୱାସ ଘାତରେ ।
କର୍ଣ୍ଣ ବୋଇଲେ ହେ ଶଲ୍ୟ ରଥ ଦିଅ ଚାଳି
ନିଶ୍ଚୟ ମାରିବି ଆଜ ପାର୍ଥ ବନମାଳୀ ।
ଭୀମକୁ ମାରିବ ଦୁଃଶା ଭାଙ୍ଗି ମୁଣ୍ଡହାଡ଼
ଯୁଧିଷ୍ଠିର ସହଦେବ କଥାକୁ ତ ଛାଡ଼ ।
ଏଣେ ନନ୍ଦଘୋଷ ଚଢ଼ି ବୀର ଅରଜୁନ
ଖୋଜି ନ ପାଇଲେ କାହିଁ ଯୁଧିଷ୍ଠିର ଦର୍ଶନ ।
ତହୁଁ ମନ୍ତ୍ରୀକି ଡକାଇ ପୁଛିଲେ କାରଣ
ସହଦେବ ଜଣାଇଲେ ସର୍ବ ବିବରଣ ।
ଧର୍ମଙ୍କର କେଶଧରି କର୍ଣ୍ଣ ଘେନିଗଲା
ଖଡ୍‌ଗ ଘେନି ହାଣିବାକୁ ଉଦ୍ୟମ କରିଲା ।
କୁନ୍ତୀ ରଖ କୁନ୍ତୀ ରଖ ଧର୍ମ ଦ୍ୟନ୍ତେ ଡାକ
ତହୁଁ କର୍ଣ୍ଣ ଛାଡ଼ିଦେଲା କହି ଧିକ ଧିକ ।
ଲାଜେ ପଳାଇଲେ ରଣ ସ୍ଥାନରେ ନ ରହି
ଇନ୍ଦ୍ରପ୍ରସ୍ଥେ ଶୋଇଛନ୍ତି କବାଟକୁ ଦେଇ ।
ଶୁଣି ପାର୍ଥ ବୋଇଲେ ହେ ଶୁଣ ଜଗନ୍ନାଥ
କର୍ଣ୍ଣଠାରୁ ଅପମାନ ପାଇ ମୋର ଭ୍ରାତ ।
ନ ପୁଣି ହରାଇଦ୍ୟନ୍ତି ଆପଣା ଜୀବନ
ବହନରେ ରଥ ବାହା ଯିବା ଭଗବାନ ।

ବନ୍ଦନ କରଣ ରଥ ବାହା ଦସ୍ୟୁନାଥ
ଯୁଧିଷ୍ଠିର ଠାକୁରଙ୍କୁ ଆସିବା ପ୍ରବୋଧି ।
ଜଗନ୍ନାଥ ବୋଇଲେକ ଯେବେ ସିବ ପାର୍ଥ
ପାଣ୍ଡବବଳକୁ କଷ୍ଟ କରବଟି ହତ ।
ଅର୍ଜୁନ ବୋଇଲେ ଆମ୍ଭ ଫେରବାର ଯାଏ
ଭୀମ ନକୁଳ ଶିଖଣ୍ଡୀ ଜଗନ୍ତୁ ସଭିଏଁ ।
ଶୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ଶିଖଣ୍ଡୀ
ଆମ୍ଭ ଆସିବାର ଯାଏ ଥାଅ ରଣ ମଣ୍ଡି ।
ଯୁଧିଷ୍ଠି ଦେବ ଯେ ଯୁଦ୍ଧୁଁ ଗଲେ ଅପମାନେ
ତାହାଙ୍କୁ ପ୍ରବୋଧି ଆମ୍ଭ ଆସିବୁ ବହନେ ।
ଆଜ୍ଞାଦେଇ ଚଳିଗଲେ ଦେବ ହୃଷୀକେଶ
ହୋଇଲେ ଧାଇଣ ଇନ୍ଦ୍ରପ୍ରସ୍ଥ ପରବେଶ ।

—*—

## ଯୁଧିଷ୍ଠି ଅର୍ଜୁନଙ୍କୁ ଲାଞ୍ଛନା କରିବା ଓ ଅର୍ଜୁନଙ୍କ କୋପ

ପଚାରିଲେ ବୈବସ୍ୱତ ମନୁ ନରପତି
ଶୁଣ ହେ ଅଗସ୍ତି ମୁନି ମୋହର ଭାରତୀ ।
ଯୁଧିଷ୍ଠି ଇନ୍ଦ୍ରପ୍ରସ୍ଥକୁ ଗଲେ ଯେ ପଳାଇ
କୃଷ୍ଣ ଅରଜୁନ ଗଲେ ସଙ୍ଖୋଳିବା ପାଇଁ ।
ତାଙ୍କୁ ଦେଖି କ କହିବେ ଯୁଧିଷ୍ଠିର ରାୟ
ସେହି କଥା କହ ମୋତେ ମୁନି ମହାଶୟ ।
କହିଲେ ଅଗସ୍ତି ମୁନି ଶୁଣ ହେ ରାଜନ
ରଥରୁ ଓହ୍ଲାଇ ଗଲେ କୃଷ୍ଣ ଅରଜୁନ ।
ପୁରେ ପ୍ରବେଶି ଦେଖିଲେ ଧର୍ମ ନରପତି
ଦୁଆର କଳି ଭିତରେ ଲୁଚି ରହିଛନ୍ତି ।
ହ୍ୱନପୂର୍ବୀ ହୋଇ ଡାକିଲେ ଶ୍ରୀ ମଧୁସୂଦନ
ଉତ୍ତର ନ ଦିଅନ୍ତି କୋପେ ଧର୍ମଙ୍କ ନନ୍ଦନ ।
ଅତ୍ୟନ୍ତ କଷ୍ଟାଳ ଯତ୍ନେ କଲେ ବନମାଳୀ
ବାହାରି ହୋଇଲେ ଧର୍ମ ଘେନ ଅର୍ଘ୍ୟଥାଳୀ ।
ବୋଇଲେ ଆସ ଅର୍ଜୁନ ତୋତେ ଦେବ ଅର୍ଘ୍ୟ
କର୍ଣ୍ଣକୁ ମାରଣ ଯେବେ ମିଳିଲୁ ମୋ ଆଗ ।
ପାର୍ଥ ବୋଲେ ଦେବ ତୁମ୍ଭ ଅପମାନ ଜାଣି
ଆସିଛୁ ଦେଖିବା ସଙ୍ଗେ ଘେନ ଚକ୍ରପାଣି ।
ଶୁଣି ଯୁଧିଷ୍ଠି ବୋଇଲେ ଧିକରେ ଅର୍ଜୁନ
କେତେ ଯେ ଦୁଃଖ ନ ଦେଲା ମୋତେ ସୂତକର୍ଣ୍ଣ
ସେ ସକଳ କଥା ମୁହିଁ କହିବଇଁ କେତେ
ବାଳଧରି ଓଟାରିଲା ସୈନ୍ୟଙ୍କ ସାକ୍ଷାତେ ।
ଆଖି ରଙ୍ଗବର୍ଣ୍ଣ କରି ଉଞ୍ଚାଇ କୃପାଣ
ଯେତେ କଟୁ କହିଛି ତା ଭୁଲିବଇ ପ୍ରାଣ ।
ଯେଉଁକାଳେ ଖଣ୍ଡା ଆଣି ବସାଇଲା ଗଳେ
କୁନ୍ତୀ ମାତା ରଖ ବୋଲି ଡାକିଲି ସେକାଳେ
ତେବେ ସେ ଛାଡ଼ିଲା ଦେଖ ଦୃପଦ କଣ୍ଟାଳେ
ପଳାଇ ଆଇଲି ମୁହିଁ ପ୍ରାଣର ହିକଳେ ।
ତୋହର ପରାକ୍ରମ ଭାଳି ଥାଉଁ ଥାଉଁ ମୋର
ଏତେ କଷ୍ଟ ହେଲା ଧିକ ବୀରପଣ ତୋର ।
ଧିକ ଧିକ ଶତଧିକ ଏ ତୋର ପ୍ରାଣକୁ
କାହିଁପାଇଁ ଦଶନାମ ଧରିଛୁ ବୃଥାକୁ ।
ଧିକ ତୋର ଦେବଦତ୍ତ ଶଙ୍ଖକୁ ରେ ପାର୍ଥ
ଧିକ ତୋ ଗାଣ୍ଡିବ ଧନୁ ଧରିବାର ବ୍ୟର୍ଥ
ଧିକ ତୋର ପାଶୁପତ ସେ ଅକ୍ଷୟ ତୂଣ
ଧିକ ତୋର ଆଡମ୍ବର ଧିକ ବଡ଼ପଣ ।
ମିଛେ ଅପାର ପ୍ରତିଜ୍ଞା କରଣ ତୁ କହୁ
କଶାଟୀ ଅଣ ତୋହର ନାମ ଧିକ ହେଉ ।
ଧିକ ତୋର ନନ୍ଦିଘୋଷ ସେ କପିକେତନ
ଧିକ ଧିକ ତୋର ସଖା ଦେବକୀ ନନ୍ଦନ ।
ଆରେ କୃଷ୍ଣ ତୁହି ପରା ଠାକୁର ବୋଲାଉ
ତୋହର ଶରୀର ମାଂସ ଶିବା ଗୃଧ୍ର ଖାଉ ।
ଶ୍ରୀକୃଷ୍ଣର ଅପମାନେ ପାର୍ଥ ପାଇ ତାପ
ଶିର ଝୁଣି ଉଠିଲେ ସେ କରି ଅତି କୋପ ।
ପାଶୁପତ ଅସ୍ତ୍ର ପୁଣି ଅକ୍ଷୟ ତୂଣୀର
ବେଗେ କାଢ଼ି ପକାଇଲେ ଦେହରୁ ତାଙ୍କର ।
ଖଡ଼୍‌ଗ ଧରିଣ କୋପେ ହୋଇ ପରଚଣ୍ଡ
ବୋଇଲେ କାଟିବି ଆଜ ଯୁଧିଷ୍ଠିର ମୁଣ୍ଡ ।
ଖଡ଼୍‌ଗ ବୁଲାଇ ଯହୁଁ କାଟିବାକୁ ଗଲେ
ଆସନରୁ ଉଠି କୃଷ୍ଣ ତାହାଙ୍କୁ ଧଇଲେ ।
ଶ୍ରୀକରେ ହସ୍ତ ଧରିଣ ଦେବ ଚକ୍ରଧାରୀ
ଅର୍ଜୁନଙ୍କୁ ବାସୁଦେବ ନେଲେ କୋଳକରି ।
କାହାଠାରେ ଏତେ କ୍ରୋଧ କରୁଛ ଅର୍ଜୁନ
ଜ୍ୟେଷ୍ଠଭ୍ରାତା ଅଟନ୍ତି ସେ ପିତାଙ୍କ ସମାନ ।
କଶାଟୀ କହିଲେ ଶୁଣ ଆହେ ଦୟାମୟ
ଶିବ ଗୌରୀ ଯେଉଁକାଳେ ହୋଇଣ ସଦୟ ।

ପାଶୁପତ ଅସ୍ତ୍ର ତୂଣି ଏ ଅକ୍ଷୟ ତୋଣ
ଯେତେବେଳେ ଦେଲେ ମୁହିଁ କଲି ଏହି ପଣ
ଏ ଅସ୍ତ୍ରକୁ ନିନ୍ଦାକରି କହିବ ଯେ ପ୍ରାଣୀ
ତାହାର ମୁଣ୍ଡକୁ ନିଶ୍ଚେଁ ଛେଦାଇବି ଜାଣି ।
ଅଥବା ତାହାକୁ ଯେବେ ନ ପାରିବି ମାରି
ଅଗ୍ନି ଜାଳି ମରିବି ମୁଁ ଅଛି ସତ୍ୟକରି ।
ଶ୍ରୀକୃଷ୍ଣଙ୍କ ପାଦତଳେ ଅର୍ଜୁନ ପ୍ରଣମି
ନିଶ୍ଚେଁ ଯୁଧିଷ୍ଠିରଙ୍କୁ ବଧ କରିବଇଁ ସ୍ୱାମୀ ।
ଯଦ୍ୟପି ଯୁଧିଷ୍ଠିରଙ୍କୁ କରିବଇଁ ରକ୍ଷା
ଅଗ୍ନି ଜାଳିଣ ମରିବି ଏ ମୋହର କକ୍ଷା ।
ଏ ଦୁଇକଥାରୁ ଯେବେ କଥାଏ ନୋହିବ
ପାଶୁପତ ଅସ୍ତ୍ରତୋଣ କୈଳାସେ ଚଳିବ ।
ହରି ବୋଇଲେ ଲେଉଟି ଯୁଧିଷ୍ଠିରଙ୍କୁ ମାରି
ତୋ ନିଜ ବଳରେ ତାଙ୍କୁ ପାରୁ କିପରି ।
ଅର୍ଜୁନ ବୋଇଲେ ତହୁଁ ଶୁଣ ରମାଈଶ
ତ୍ରୈଲୋକ୍ୟ ମଧ୍ୟରେ ମୁହିଁ ନ କରିଛି କସ ।
ଅଙ୍ଗାରପର୍ଣ୍ଣଗକୁ ମୁଁ ସମରେ ଜିଣିଲି
ପାଣ୍ଡ୍ରବାସୁରକୁ ମାରି କୃଷ୍ଣଙ୍କୁ ରଖିଲି ।
ଶରରେ ବାନ୍ଧିଲି ସେତୁ ସାଗର ମଧ୍ୟରେ
ହନୁକୁ ମୁଁ ଜିଣିଥିଲି ସେହି ବିବାଦରେ ।
କାଳୀୟ ନାଗର ଚୂର୍ଣ୍ଣ କରିଅଛି ଦର୍ପ
ପାଦେ ମରଦିଲ ତହିଁ ଯେତେ ଥିଲେ ସର୍ପ ।
ନିବାତ କବଚଙ୍କୁ ମୁଁ ପ୍ରାଣେ କଲି ନାଶ
ମୋତେ ହାରିଗଲେ ରଣକରି ଅମରେଶ ।
ଖଣ୍ଡବନେ ଅକେଳଶରେ ପ୍ରମାଦ କଟିଲି
ବଳରାମଙ୍କୁ ଜିଣିଣ ସୁଭଦ୍ରା ଆଣିଲି ।
ବୃକଳଶ ସହସ୍ର ରାଜା ଜିଣିଲି ମୁଁ ହେଳେ
ବୀରବୋଲି ନ ଗଣଇ କାହାକୁ ଭୂତଳେ ।
ରାଜସୂୟ ଯଜ୍ଞକାଳେ କେମନ୍ତ ହୋଇଛି
ଧନୁଦ୍ଧଳେ ନବଦ୍ୱୀପା ପୃଥିବୀ ଧରିଛି ।
ତହିଁରେ ବାସୁକୀ ଦର୍ପ ହୋଇଛି ଗମନ
ସେ କଥା କି ନ ଜାଣିଛ ଆହେ ଭଗବାନ ।
କିରାତରୂପେ ହରଙ୍କୁ ଜିଣିଲି ମୁଁ ହେଳେ
ଗୋସିଂହକୁ ବଧ କଲି ତୁମ୍ଭ ଯଜ୍ଞକାଳେ ।
ପଞ୍ଚାଳ ଦେଶର କଥା ଜାଣ ଶିରୀପତି
ଦ୍ରୌପଦୀ ଆଣିଲି ଜିଣି ଲକ୍ଷେକ ନୃପତି ।

ସୁବାହୁ ଅସୁର ରଣେ କରିଲି ବିନାଶ
ତାହା କି ନ ଜାଣ ତୁମ୍ଭେ ଆହେ ରମାଈଶ ।
ଆହୁରି କଥାଏ ଶୁଣ କହୁଛି ତୁମ୍ଭଙ୍କୁ
କୌରବେ ଚଳିଲେ ଯେବେ ବିରାଟ ଦେଶକୁ
ତାହାଙ୍କୁ ସେଠାରେ ମୁହିଁ ଯେମନ୍ତ କରିଛି
ସେହି କଥା ତୁମ୍ଭଙ୍କୁ କି ବିଦିତ ନୋହିଛି ।
ଏ ସକଳ କଥା ଶୁଣି ଦେବ ରମାଈଶ
ପାର୍ଥଙ୍କୁ ବୋଇଲେ ତହିଁ କରି ପରିହାସ ।
ଯେ ଜନ କହେ ଆପଣା ପ୍ରଶଂସା ବଚନ
ମରଣ ସଙ୍ଗରେ ସେହୁ ହୁଅଇ ସମାନ ।
ଅର୍ଜୁନ ବୋଇଲେ ସ୍ୱାମୀ ଏକ କଥା ଶୁଣ
ଏକ୍ଷଣି କୈଳାସ ଯିବ ପାଶୁପତ ବାଣ ।
ସେ ଅକ୍ଷୟତୂଣୀ ମଧ୍ୟ ତା ସଙ୍ଗରେ ଯିବ
ଆଉ ତ ତାହାକୁ କେହି ରଖି ନ ପାରିବ ।
ଏଥିରେ କିଞ୍ଚିତ ମାତ୍ର ସନ୍ଦେହ ନ କର
ଯେମନ୍ତେ ରହିବ ତାର ପ୍ରତିକାର କର ।
ଅର୍ଜୁନ ମୁଖରୁ ଶୁଣି ଦେବ ଦୟାମୟ
ସଦାଶିବଙ୍କ ନିକଟେ ଲଗାଇଲେ ଲୟ ।
ଜୟ ଜୟ ବ୍ୟୋମକେଶ ତ୍ରିପୁରଅନ୍ତକ
ଜୟ ଜୟ ସଦାଶିବ ସଂସାର ପାଳକ ।
ଦେବଙ୍କୁ ରଖିଲ ମାରି ତ୍ରିପୁର ଅରାତି
ଚିରକାଳ ରଖିଅଛ ଅକ୍ଷୟ କୀରତି ।
ଜୟ ମାତ ଶାକମ୍ଭରୀ ଗିରିରାଜ ଝିଅ
ଅର୍ଜୁନଙ୍କୁ ଦୟାକରି ସାହାପକ୍ଷ ହୁଅ ।
ଯୁଧିଷ୍ଠିର ଧିକାରିଲେ ହୋଇ କୋପମନ
ତେଣୁ ଅର୍ଜୁନ ଛାଡ଼ିଲେ ଶର ଆଉ ତୂଣ ।
ଏବେ ମୁଁ ମାଗୁଛି ମାତେ ହୋଇଣ ବିନୟୀ
ଅର୍ଜୁନ ପାଶରେ ଥାଉ ଶରତୂଣ ଦୁଇ ।
ଏହି ପରକାରେ ସ୍ତୁତି କରନ୍ତେ ଶ୍ରୀହରି
କୈଳାସେ ଥାଇ ଜାଣିଲେ ଈଶ୍ୱର ଈଶ୍ୱରୀ ।
ସନ୍ତୋଷରେ ହରଗୌରୀ କରିଲେ ଆଦେଶ
ଆରେ ଶରତୂଣ ବେନି ଥାଅ ପାର୍ଥ ପାଶ ।
ଶରତୂଣ ଯେ ସ୍ଥାନରୁ ଚଳି ଯାଉଥିଲେ
ପୁଣି ପାର୍ଥ ତୂଣୀରରେ ଆସି ସମ୍ଭାଇଲେ ।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ହେ-କିରୀଟୀ
ସାବଧାନ ହୋଇକରି ମୋର କଥାଗୋଟି ।

ତୁମ୍ଭେ ଯେ ବୋଇଲ ନାଆଁ ଜାଳିଣ ମରିବ
କେଉଁ ପ୍ରଶଂସା ହୋଇଲା କହ ତ ହେ ଭାବ ।
ଶ୍ରୀକୃଷ୍ଣ ବଚନେ ଶାନ୍ତ ହେଲେ ଫାଲଗୁନ
ରଥେ ବଢେ କଲେ ତହୁଁ ଦିବ୍ୟଅସ୍ତ୍ର ଘେନ ।
ଯୁଧିଷ୍ଠିର ମଧ ମନେ ଲଭିଣ ସନ୍ତୋଷ
ରଣଭୂଇଁରେ ତିନହେଁ ହୋଇଲେ ପ୍ରବେଶ ।

---

## ଭୀମ ଦୁଃଶାସନର ଯୁଦ୍ଧ ଓ ପ୍ରଥମ ଯୁଦ୍ଧରେ ଭୀମର ପରାଜୟ

ପଚାରନ୍ତି ବୈବସ୍ୱତ ମନୁ ମହାମତି
ହେ ଅଗସ୍ତି ମୁନି ଶୁଣ ମୋହର ଭାରତୀ ।
ଯୁଧିଷ୍ଠିରଙ୍କୁ ବୋଧିବାକୁ ଗଲେ କୃଷ୍ଣାର୍ଜ୍ଜୁନ
ଏଣେ କେଉଁ କୃତ୍ୟ କଲେ କଉରବ ସୈନ୍ୟ
ସେ କଥା କହି ସନ୍ତୁଷ୍ଟ କର ମୋ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
କୃଷ୍ଣାର୍ଜ୍ଜୁନଙ୍କୁ ନ ଦେଖି କଉରବ ବୀରେ
ପଡ଼ିଲେ ପାଣ୍ଡବ ସୈନ୍ୟମାନଙ୍କ ଉପରେ ।
ଶିଖଣ୍ଡୀକୁ ଦୁଃଶାସନ ସୋମଦତ୍ତ ଭୀମ
ଏହିପରି ପରସ୍ପରେ କରିଲେ ସଂଗ୍ରାମ ।
ସୋମଦତ୍ତ ଭୀମ ଅଙ୍ଗେ କଲେ ଶରଘାତ
ତାହା ଦେଖି ଭୀମସେନ ହୋଇ କୋପାନ୍ୱିତ ।
ଗଦା ବୁଲାଇ ରଥରେ କରନ୍ତି ପ୍ରହାର
ଅଶ୍ୱ ସାରଥି ସହିତ ରଥ ହେଲା ଚୂର ।
ଅତିବେଗେ ସୋମଦତ୍ତ ରଥରୁ ଡେଇଁଲେ
ଏକ ମତ୍ତକରୀ ପୃଷ୍ଠେ ଆରୋହଣ କଲେ ।
ପାଞ୍ଚସହସ୍ର ବଳର ଧନୁ କରେ ଧରି
ଭୀମଙ୍କ ଉପରେ ଶର ବିନ୍ଧିଲେ ଓଟାରି ।
ସେ ସକଳ ଶର ଭୀମ ଶରୀରରେ ପଡ଼ି
ଅଙ୍ଗେ ନ ଭେଦି ଭୂମିରେ ପଡ଼ଇ ଉପୁଡ଼ି ।
ଆରେ ସୋମଦତ୍ତ ରହ ରହ ଭୀମ କହି
ଗଜ ବକ୍ଷସ୍ଥଳେ ଗଦା ପ୍ରହାରିଲେ ନେଇ ।
ସେ ଗଦାଘାତେ କୁଞ୍ଜର ଭାଙ୍ଗିଲା ପଞ୍ଜର
ସୋମଦତ୍ତ ପଳାଇଲେ ହୋଇଣ ଅସ୍ଥିର ।
ଗାନ୍ଧାରୀର ନନ୍ଦନ ଯେ ଦୁଃଶାସନ ବୀର
ପିଟନ୍ତେଣ ରଥ ଗଜ ହୋଇଯାନ୍ତି ଚୂର ।
ରଥର ଉପରେ ନେଇ କଚାଡ଼ଇ ରଥ
ଗଜର ଉପରେ ନେଇ ଗଜ ସେହିମତ ।
ପଦାତି ସୈନ୍ୟମାନଙ୍କୁ ମାରନ୍ତି ଗୋଡ଼ାଇ
ପୁଣି ଅଶ୍ୱମାନଙ୍କର ପରିଆ ଛେଦଇ ।
କାହାକୁ ଗୋଇଠା ମାରେ କହୁଣି ଖୁନ୍ଦାଏ
ମାରନ୍ତେ ତାହାର ପ୍ରାଣ ଶୂନ୍ୟେ ଉଡ଼ିଯାଏ ।
କଦଳୀ ବନକୁ ଯେହ୍ନେ କରଇ ପବନ
ପାଣ୍ଡବ ଦଳକୁ ତେହ୍ନେ କରେ ଦୁଃଶାସନ ।
ପଳାଇ ଯାଆନ୍ତି ସୈନ୍ୟ ହୋଇ ଛିନ୍ନଛନ
ଗୋଡ଼ାଇ ତାଙ୍କୁ ମାରଇ ଧୃତରାଷ୍ଟ୍ର ସୁତ ।
ସୈନ୍ୟହତ ଦେଖିକରି ଦ୍ରୁପଦ କୁମର
ରଥ ଚଢ଼ି ଓଗାଳିଲେ ହୋଇ ଆଗଭର ।
ତାକୁ ଦେଖି ଦୁଃଶାସନ ପ୍ରହାରିଲା କାଣ୍ଡ
ଅବହେଳେ ଶିଖଣ୍ଡୀ ତା କଲେ ଖଣ୍ଡ ଖଣ୍ଡ ।
ଶଏ ନାରାଚ ଶିଖଣ୍ଡୀ ବିନ୍ଧିଲେ ପାଲଟି
ପାଞ୍ଚଶତ ଶରେ ଦୁଃଶା ପକାଇଲା କାଟି ।
ଶିଖଣ୍ଡୀ ଦୁଃଶାସନର ଅସଂଖ୍ୟ ସମର
ଦୁହିଙ୍କର ଅଭାବରେ ଯୁଝେ ମହାବୀର ।
ଚଉଷଠି ଭାର ଗଦା ଘେନି ବେନି କରେ
ବୋଇଲାରେ ଶିଖଣ୍ଡୁ ପଡ଼ିଲୁ ଛାମୁରେ ।
ଏତେ ବୋଲି ଗଦା ବୀର ବୁଲାଇ ପ୍ରତ୍ୟକ୍ଷେ
ରେରେକାର ଶବ୍ଦକରି ଗର୍ଜ୍ଜେ ମହାକୋପେ ।
ବୁଲାଇଲା ଗଦାବର ଉଲ୍‌କାପାତ ଜାଣି
ଶିଖଣ୍ଡୀ ରଥରେ ତାହା ପ୍ରହାରିଲା ଆଣି ।
ବାଜନ୍ତେଣ ଦୁଃଶାସନର ସେ ଗଦାଘାତ
ଚୂର୍ଣ୍ଣୀଭୂତ ହୋଇଗଲା ଶିଖଣ୍ଡୀର ରଥ ।
ଭୟଙ୍କର କୋପ ମନେ ଉପ୍ରୋଧ ତା ନାହିଁ
ବହ୍ନିର ତେଜ ପ୍ରାୟେକ ବିକାଶିଲା ଦେହି ।
ବ୍ରହ୍ମ ଋଷି ଯେହ୍ନେ ଅବା ଉଡ଼ଇ ଆଗରେ
ଗୋଡ଼ାଇ ମାରଇ ତାଙ୍କୁ ନିର୍ଦ୍ଦୟ ଭାବରେ ।
ଯାନ ଅଭାବେ ଶିଖଣ୍ଡୀ ପାଦଗତି କରି
ଦୁଃଶାସନକୁ ମାଇଲେ ଭୂଷଣ୍ଡିକୁ ଧରି ।
ଦୁଃଶାସନ ଧାଇଁଯାଇ ଧରି ତାଙ୍କ ହସ୍ତ
ଭୂଷଣ୍ଡି ଛଡ଼ାଇ ନେଇ ପିଟିଲା ତୁରିତ ।
ଶିଖଣ୍ଡୀ ସେ ଆଘାତରେ ହୁଅନ୍ତେ ଅଚେତନ
ତାହାର ମୁଣ୍ଡ କାଟିଲା ସେହି ଦୁଃଶାସନ ।

ନାଶଙ୍କେ ରଣ କରଇ ଦୁଃଶାସନ ବୀର
ତାର ମୂର୍ତ୍ତି ଦେଖି ସୈନ୍ୟ ପଳାଇଲେ ଦୂର
ନକୁଳ କହିଲେ ଯାଇ ଭୀମସେନ ପାଶ
ଶିଖଣ୍ଡୀକୁ ଦୁଃଶାସନ କରିଲା ବିନାଶ ।
ଶୁଣିଣ ଭୀମ କହିଲେ କାହିଁ ସେ ପାମର
ଖୋଜ ଖୋଜ ପାଉନାହିଁ ଭେଟ ଯେ ତାହାର
ଏହା କହି ଦଉଡ଼ିଲେ ଭୀମ କୋପ ହୋଇ
ଆଗେ ନକୁଳ ଧାମନ୍ତ ପଥକୁ ଦେଖାଇ ।
ନେଇ ଦୁଃଶାସନ ଆଗେ କରାଇଲେ ଭେଟ
ଭୀମକୁ ଦେଖି ହରଷ ଧୃତରାଷ୍ଟ୍ର ସୁତ ।
ଚନ୍ଦ୍ରକୁ ଦେଖି ଯେସନେ ରାହୁ କୋପ କରେ
ଭୀମକୁ ଦେଖିଣ ଦୁଃଶା ହୁଏ ସେ ପ୍ରକାରେ ।
ଗିରିବର ପରକାରେ ଦିଶଇ ଶରୀର
ଆରେରେ ପାଣ୍ଡବା ବୋଲି ଡାକେ ଦୁଃଶାବୀର
ବୋଲଇ ଭାଇଙ୍କୁ ମୋର ମାଇଲୁରେ ରଣେ
କନିଷ୍ଠ ବଧ କଲୁରେ କେବଣ କାରଣେ ।
ଏତେବେଳେ ପଡ଼ିଲୁରେ ଆସି ମୋ ସମ୍ମୁଖ
ତୁହି ମଲେ ଛୁଡ଼ିବରେ ଭାଇଙ୍କର ଶୋକ ।
ତୋତେ ମାରି ଦେବଇଁ ଯେ ଆଜି ବିଷାବଳି
କେହ୍ନେ ରଖିବ ଗଉଡ଼ ସେହି ବନମାଳୀ ।
ଅଧର୍ମେ ନାଶ କଲୁ ମୋ ନିର୍ଦ୍ଦୋଷୀ ଭାଇଙ୍କୁ
ଆଜ ପଠାଇବି ତୋତେ ତାହାଙ୍କ ପାଶକୁ ।
ପୁଣ ପୁଣ ପ୍ରତିଜ୍ଞା ଯେ କରେ ଦୁଃଶାସନ
ଶୁଣିଣ ବୋଲଇ ତହୁଁ ପବନ ନନ୍ଦନ ।
ଭୀମସେନ ବୋଇଲା ରେ ଶୁଣ ଦୁଃଶାସନ
ଧର୍ମପଥେ ସଦା ତୁମ୍ଭେ କର ରେ ଗମନ ।
ଭୋଜନ ଦେବାକୁ ପରା ନେଇଥିଲ ମୋତେ
ମିଷ୍ଟାନ୍ନ ସଙ୍ଗରେ ବିଷ ଦେଲରେ କେମନ୍ତେ
ବିଷଘାତେ ଅଚେତନ ହୋଇଲି ମୁଁ ଯହୁଁ
ହାତ ଗୋଡ଼ ବାନ୍ଧି ଜଳେ ଫିଙ୍ଗିଦେଲ ତହୁଁ
ଘର ଏକ ତିଆଇଲ ବାରୁଣାବନ୍ତରେ
ଜଉ ଘୃତ ଛଣପଟ ଝୁଣା ମିଶ୍ରିତରେ ।
ପୁରଞ୍ଜନ ପଣ୍ଡାକୁରେ ଗୁପତେ ପଠାଇ
ନିଆଁ ଲଗାଇଲ ପୁଣି ସେହି ଘରେ ଯାଇ ।
ଚଉଦ ବରଷ ମାତ୍ର ଅଭିମନ୍ୟୁ ସୁତ
ସକଳେ ମିଶି ତାହାକୁ କରିଲ ନିହତ ।

କପଟ ପଶା ଖେଳାଇ ନେଲ ରାଜ୍ୟଧନ
କହିଲେ ନ ସରେ ସାର ତୁମ୍ଭର ଯେ ଧର୍ମ ।
ଦ୍ରୌପଦୀର କେଶ ତୁହି ଧରିନେଲୁ ବଳେ
ପୁଣି ବିବସନ କଲୁ ତାକୁ ସଭାତଳେ ।
ସେହିଦିନୁ କେଶ ସେହି ନ କଲା ବନ୍ଧନ
ତୋତେ ଲୋଡ଼ି ନ ପାଉଛୁ ଆରେ ଦୁଃଶାସନ
ଏତେକାଳେ ତୋର ମୋର ଭେଟ ହୋଇଅଛି
ଯାଜ୍ଞସେନୀ ଆଜ କେଶ ବାନ୍ଧିବ କହୁଛି ।
ରାଜାଙ୍କ ପ୍ରତିଜ୍ଞା ସେହି ନ ପାରିଲା ସହି
ଆଗେ ଦୁଃଶା ପ୍ରହାରିଲା ଲୌହଶର ନେଇ ।
ପ୍ରତିଶର କରି ଭୀମ କଲେ ତା ଛେଦନ
ତାହା ଦେଖି କୋପମନ ହୋଇ ଦୁଃଶାସନ ।
ଶରେ ଶର ପଡ଼ିତାକ ଉଠିଲା ଅନଳ
ସେ ନିଆଁରେ ରଣସ୍ଥଳ ଦିଶଇ ଉଜ୍ଜ୍ୱଳ ।
ହାତେବାଡ଼ା ଶର ମାଇଲା ଧୃତରାଷ୍ଟ୍ରସୁତ
ସେ ଶରେ ଭୀମଙ୍କ ରଥ ହେଲା ଚୂର୍ଣ୍ଣୀଭୂତ ।
ତହୁଁ ଭୀମସେନ କରି ପାଦରେ ସଞ୍ଚାର
ଦୁଃଶାସନ ରଥେ ଗଦା କରିଲେ ପ୍ରହାର ।
ଗଦାଘାତେ ଦୁଃଶାସନ ରଥ ହେଲା କ୍ଷୟ
ଅଶ୍ୱ ସାରଥି ସକଳେ ଗଲେ ଯମାଳୟ ।
କୋପେଣ ଡାକ ଦିଅଇ କୁରୁବଳ ଷଣ୍ଢ
ଚନ୍ଦ୍ରକିରଣକୁ ଜିଣି ଦିଶେ ଫଳାଖଣ୍ଡ ।
ଦୁଃଶାସନ ରଣ ଦେଖି ଭୀମ ହୋଇ ରାଗ
ଘୋର ଗର୍ଜ୍ଜନ କରିଣ ଧରିଲେ ଖଡ଼ଗ ।
ବିକ୍ରମ ସିଂହକୁ ଜିଣି ଦୁଇ ମହାବଳ
କ୍ରୋଧେ ପିହାପିଠି ହେଲେ ଠିଆ ହୋଇ ତଳ
ଅଧରେ ଦଦନ ଚୁପି ରେରେକାର କରି
ଦୁହେଁ ଧରାଧରି ହୋଇ ହେଲେ ମରାମରି ।
ଦୁହେଁ ଦୁହିଙ୍କର ଖଣ୍ଡା ବୁଲନ୍ତି ଆମଣ୍ଡି
ଦୁଇ ରଣଷଣ୍ଢ ଯାନ୍ତି ଯୂଥେ ପଥ ଘୁଞ୍ଚି ।
ପୁଣି ଦୁଇଜଣ ଆସି ମୁଣ୍ଡେ ମୁଣ୍ଡ ଲଢ଼ି
ଧରାଧରି ହୋଇକରି ହୋନ୍ତି ଗଡ଼ାଗଡ଼ି ।
ଏହିପରି ଦୁହେଁଯାକ ଘୋର ରଣେ ମଜ୍ଜି
ଦୁହିଙ୍କର ଧରିଥିବା ଖଣ୍ଡା ଗଲା ଭାଜି ।
ଦୁହିଙ୍କର ରଣଘାତେ ମେଦିନୀ କମ୍ପିଲା
ଉଲ୍କାପାତ ହେଲାପରି ଚୌଦିଗ ଦିଶିଲା ।

ଏହିକାଳେ ଧନଞ୍ଜୟ ହେଲେ ଉପସ୍ଥିତ
ସୋମଦତ୍ତ ଡାକିଲେ ତାହାଙ୍କୁ ଭରତ ।
ସୋମ ମଣ୍ଡଳରେ ସେହି ଅଟେ ଅଧିପତି
ଆରୋହିଛି ସୁଦାନ୍ତା ନାମେଣ ମତ୍ତହସ୍ତୀ
ଶୂଳଶ ସହସ୍ରପଳ ଲୌହଧନୁ ଧରି
ଅର୍ଜ୍ଜୁନଙ୍କୁ ଶରାଘାତ କରେ ଆଗକରି ।
ତଦଅନ୍ତେ ପଞ୍ଚଦଶ ନାରାଚ ବିନ୍ଧିଲେ
ବାବଲ ଶରେ ଅର୍ଜ୍ଜୁନ କାଟି ପକାଇଲେ ।
ସୂଚିମୁନା ଶର ଦୁଟେ ମାଇଲେ ଅର୍ଜ୍ଜୁନ
ହସ୍ତୀ ମୁଣ୍ଡେ ଗଳାଯାନ୍ତେ ଛାଡ଼ିଲା ଜୀବନ
ଅର୍ଜ୍ଜୁନ ହାତରେ ମରି ସୁଦାନ୍ତା କୁଞ୍ଜର
ମୁକ୍ତିଲଭି କରି ଗଲା ଅମର ନଗର ।
ସୋମଦତ୍ତ ଆନ ହସ୍ତୀ ଆରୋହଣ କରି
ନାରାଚ ପ୍ରୟୋଗ କଲେ ଜଳଧାରା ପରି ।
ଗୋବିନ୍ଦ ବୋଇଲେ କିସ ବୁଝିଲ ଅର୍ଜ୍ଜୁନ
ମାରୁଅଛି ଶର ରାଗେ ଦର୍ପେ ହୋଇ ପୂର୍ଣ୍ଣ ।
ଧନ୍ୟ ଧନ୍ୟ କୁରୁବଳ କେମନ୍ତ କ୍ଷମତା
ସତ୍ୟ ନେତାରେ ନ ଥିବ ଏମନ୍ତ ଶକତା ।
ଶ୍ରୀକୃଷ୍ଣ ପ୍ରଶଂସା ଶୁଣି ପାର୍ଥ ହୋଇ ରାଗ
ଅର୍ଦ୍ଧଚନ୍ଦ୍ର ଶର ବେଗେ କରିଲେ ପ୍ରୟୋଗ ।
ସେ ଶର ପଡ଼ିଲା ସୋମଦତ୍ତ କଟିମୂଳେ
ଦୁଇଖଣ୍ଡ ହୋଇ ଛିଣ୍ଡି ଗଲା ତତକାଳେ ।
ତଥାପି ତାହାର ପ୍ରାଣ ନୋହିଲା ବାହାର
ନୟନ ତରାଟି ଦାନ୍ତେ ଗୃପିଲା ଅଧର ।
ଆପଣା ଧନୁରେ ପୁଣ ବସାଇଲା ବାଣ
ନା ପ୍ରୟୋଗ କରୁ କରୁ ଛାଡ଼ିଗଲା ପ୍ରାଣ ।
ଦେଖି ପାର୍ଥଙ୍କୁ ବୋଇଲେ ଦେବ ଦାମୋଦର
ଦେଖ ଦେଖ ସୋମଦତ୍ତ କରେ କି ପ୍ରକାର
ତ୍ରୈଲୋକ୍ୟ ମଧ୍ୟରେ ନାହିଁ ଯୋଦ୍ଧା ଏହାପରି
ବେଗେ ଏହା ପ୍ରାଣ ନେନ ବିଳମ୍ବ ନ କରି
ପାର୍ଥ ବୋଇଲେ ମାହୁନ୍ତ ଗଜ ପ୍ରାଣେ ହତ
ରାଗେ ଛାଡ଼ା ହୋଇଛନ୍ତି ସେସନେ ଜୀବିତ ।
ସୋମଦତ୍ତ ମଧ୍ୟ ନିଜ କାଣ୍ଡେ ଶର ଯୋଖି
ଗତପ୍ରାଣ ହୋଇଅଛି ତରାଟିଣ ଆଖି ।
ବହୁତ ପ୍ରଶଂସା କଲେ ଶୁଣି ଜଗନ୍ନାଥ
ସାଧୁ ସାଧୁ ବୋଲନ୍ତି ଯେ ବୀରବର ପାର୍ଥ ।

ପାର୍ଥ ବୋଇଲେ ଆଉ କି ପ୍ରହାରିବି ଶର
ଶ୍ରୀକୃଷ୍ଣ ବୋଇଲେ ନାହିଁ ଆଉ ଏ ପ୍ରକାର ।
ତହୁଁ ନନ୍ଦିଘୋଷ ରଥ ନେଲେ ଭଗବାନ
କର୍ଣ୍ଣଙ୍କ ରଥ ଆଗରେ କରିଲେ ସ୍ଥାପନ ।
ଅର୍ଜ୍ଜୁନ ବୋଇଲେ ଶୁଣ ହେ ଯାଦବଈଶ
ନନ୍ଦିଘୋଷକୁ ସମ୍ଭାଳ କରିଣ ବିଶେଷ ।
କର୍ଣ୍ଣର ମୋହର ପୁଣି ହେବ ଭେଟାଭେଟି
ବଡ଼ଘାଇ ଅଭିମାନ ଆଜି ଯିବ ତୁଟି ।
ଶ୍ରୀକୃଷ୍ଣ ବୋଇଲେ କର୍ଣ୍ଣ ସମର ଉପେଖି
ଭୀମ ଦୁଃଶାସନ ରଣ ରଥେ ଥାଇ ଦେଖ ।
ଦୁଇବୀର ଗଦାଧରି କରନ୍ତି ସମର
ଗଦାଘାତେ ପଡ଼ିତାଳେ କମ୍ପେ ତନପୁର ।
ଉଠନ୍ତି ପଡ଼ନ୍ତି ପୁଣି ଗଡ଼ନ୍ତି ମହୀରେ
ପୃଥିବୀ କମ୍ପେ ଦୁହିଙ୍କ ଗଦା ଆଘାତରେ ।
ହିମାଳୟ ଗିରି ତୁଲ୍ୟ ଦୁହିଙ୍କ ଶରୀର
ଗଦାଘାତେ ଦୁଃଶାସନ ଗଦା ହେଲା ଚୂର ।
ଶୂନ୍ୟହସ୍ତ ହେଲା ଯହୁଁ ଧୃତରାଷ୍ଟ୍ର ସୁତ
ଧୁଞ୍ଜିଯାଇ ଛାଡ଼ା ହୋଇ ରଣ କରି ତ୍ୟକ୍ତ ।
ଆସ ଆରେ ଦୁଶାସନ ଡାକନ୍ତି ପାବନି
ପଳାଇ ପାରିବୁ କରେ ଜୀବନକୁ ନେନ ।
ତାହା ଶୁଣି ଦୁଃଶାସନ କରିଲା ଉତ୍ତର
ଶୂନ୍ୟହସ୍ତ ହେଲି ଗଦା ଚୂର୍ଣ୍ଣ ହେଲା ମୋର ।
ଭୀମବୋଇଲେ ଛାଡ଼ିଲି ମୋର ଗଦା ତେବେ
ଆସ ସମର କରିବା ଶୂନ୍ୟହସ୍ତେ ଏବେ ।
ଦୁଃଶାସନ ଶୂନ୍ୟହସ୍ତେ ଆସିଲା ଲେଉଟି
ପୁଣି ବିଧା ଗୁପୋଡ଼ାରେ ହେଲେ ପିଟାପିଟି ।
ଛାତିକୁ ଛାତି ଲଗାଇ ଧୁଞ୍ଜିଯାନ୍ତି ପୁଣି
ହାତ ଧରାଧରି ହୋଇ ହୋନ୍ତି ଟଣାଟଣି ।
ଭୁଜକୁ ଭୁଜରେ ଛନ୍ଦି ମୁଣ୍ଡେ ମୁଣ୍ଡ ପିଟି
ପୁଣି କେହି ପଡ଼ିଯାଇ ତଳେ ଯାଏ ଲୋଟି ।
ସତ୍ୟଯୁଗରେ ଯେମନ୍ତେ କେତୁକା ମ[illegible]ଲ
ସମର କରନ୍ତେ ମହୀ ହେଲା ଟଳମଳ ।
ସେହିପରି ଦୁଃଶାସନ ଭୀମଙ୍କର ରଣ
ଆକାଶେ ଥାଇ ଦେଖନ୍ତି ଦେବ ଲୋକଗଣ ।
ଭିଡ଼ା ଭିଡ଼ି ପଡ଼ା ପଡ଼ି ହୋଇ ବେନିବୀର
ଲୋମକୂପରୁ ରକତ ବହେ ଝରଝର ।

କେହ୍ନ କାହା ଜାନୁତଳେ ଗୁପିଦିଏ ମୁଣ୍ଡ
କେ ନଖେ ବଦାଇ ତାକୁ କରେ ଖଣ୍ଡ ଖଣ୍ଡ ।
ରକ୍ତ ମାଂସରେ ଜଡ଼ିତ ଦୁହିଙ୍କର କାୟ
ଦୁହେଁ ଦିଶନ୍ତି ଯାମଳା ତରୁବର ପ୍ରାୟ ।
ମୃତପିଣ୍ଡ ରକ୍ତ ମାଂସେ ହୋଇଲା କାଦୁଅ
ସହି ନ ପାରି କମ୍ପିଲା ଧରା ଅତିଶୟ ।
ଭୁଜେ ଭୁଜ ପ୍ରହାରଣ କରନ୍ତି ଗର୍ଜ୍ଜନ
ରଟମଟ ଚୋବାଅନ୍ତି ଆପଣା ବଦନ ।
ବିକଟ ମୁଖ ଅଧରେ ବଦନକୁ ଚୁପି
ମନ୍ଦର ଗିରି ପ୍ରାୟେକ ଦୁହେଁ ବୀରରୂପୀ ।
ତଳେ ପଡ଼ିଥିଲା ଯେଉଁ ହାଡ଼ ମେଦ ମାଂସ
କର୍ଦ୍ଦମ ହୋଇଣ ସେହ୍ନ ଛୁଟିକେ ଆକାଶ ।
ବାର ଯୋଜନ ଓସାର ଅଛି ରଣଭୂଇଁ
ଗଡ଼ି ଗଡ଼ି ଯଥାସ୍ଥାନେ ମିଳନ୍ତି ସେ ଦୁଇ ।
ଉଭୟ ବଳର ସୈନ୍ୟ ଗଲେ ଅପସରି
ଦେଖଣାହାରୀ ରହିଲେ ଠିଆ ହୋଇକରି ।
ସେତାରେ ବାଳୀ ସୁଗ୍ରୀବ ଯଥା କଲେ ରଣ
ଭୀମ ଦୁଃଶାସନ ଯୁଦ୍ଧ ସେହିପରି ଜାଣ ।
ନାରଦ ଅଇଲେ ଘେନ କଳର ଯୋକଡ଼
ଲାଗୁ ଲାଗୁ କହି ମୁନି ତହିଁ ହେଲେ ଖାଡ଼ ।
ଲାଗିଲା ଦୁହିଁଙ୍କ ରଣ ହୋଇ ଅତିଶୟ
ନାଚନ୍ତି ଆନନ୍ଦ ହୋଇ ସେ କଳହ ପ୍ରିୟ ।
ଭୀମ ଦୁଃଶାସନ ଦୁହେଁ କରନ୍ତି ସମର
ରଥ ଗଜ ଅଶ୍ୱ ସବୁ ହେଉଛନ୍ତି ଚୂର ।
କରନ୍ତି ଘୋର ସମର ତହିଁ ବେନିବୀର
କମ୍ପିଲା ସ୍ୱର୍ଗ ମରତ ପାତାଳ ଯେ ପୁର ।
ପଡ଼ି ଉଠିକରି ଏକ ଅନ୍ୟକୁ ଭିଡ଼ନ୍ତି
ଭୂମି ଆକର୍ଷି ମାରନ୍ତି କରି ପାଦଗଡ଼ ।
ବାହାସ୍ଫୋଟ ମାରି ବୀରେ ଉଠନ୍ତି ବହନ
କାଳଚକ୍ର ପ୍ରାୟେ ସେହ୍ନ ବୁଲନ୍ତି ନୟନ ।
ଅବଶ ହେଲେ ଆୟାସ ନ ଲଭନ୍ତି ବେନି
ଦୁହିଙ୍କର ପଦଘାତ ନ ସହେ ମେଦିନୀ ।
ଭୀମସେନକୁ ଗଡ଼ାଇ ଧୃତରାଷ୍ଟ୍ରସୁତ
ଛାତି ଉପରେ ମାଡ଼ିଣ ବସିଲା ତ୍ୱରିତ ।
ହିମବନ୍ତକୁ ମନ୍ଦର ଚାପିଲାରି ପରି
ଭୀମକୁ ଚାପିଣ ଦୁଃଶା ଦିଶେ ସେହିପରି ।

କଟିପରେ ପାଦ ଦେଇ ହାତେ ଚାପେ ଗଳା
ନାସିକାରେ ମୁଥା ମାରେ ଧୃତରାଷ୍ଟ୍ର ବଳା ।
ଅତି କୋପଭର ହୋଇ ଡାକେ ଭୀମା ଭୀମା
ବାଳକ ଭାଇଙ୍କୁ ମାରି ଏଡ଼େ ତୋ ଗାରିମା ।
ସେ ପାପର ପ୍ରତିଫଳ ଦେବି ମୁଁ ଏଥର
ଏବେ ତୁନିହୋଇ କପାଁ ରହିଛୁ ପାମର ।
ଦ୍ରୌପଦୀକୁ ତାକ ରକ୍ତେ ଧୋଇବ ତା କେଶ
ବାଳ ବାନ୍ଧିନାହିଁ ତେର ପନ୍ଦର ବରଷ ।
ଏହା କହି ପୁଣି ପୁଣି ପ୍ରହାର କରଇ
ଗର୍ଜ୍ଜନରେ ରଣଭୂଇଁ କମ୍ପାଇ ଦିଅଇ ।
ଆରେ ପାଣ୍ଡବା ତୁ ପରା ବୋଲଉଛୁ ବୀର
ଏବେ କପାଇଁ ରହିଛୁ ନ ହେଉ ଉତ୍ତର ।
ରେ ରେ ପାଣ୍ଡବା ତୁହି ତ ସବୁ ବୁଡ଼ାଇଲୁ
ମୋହର ହାତରେ ପଡ଼ି ନଷ୍ଟପ୍ର ମରିଲୁ ।
ରେ ପାଣ୍ଡବା ମରିବୁ ତୁ ଆସୁ ଥାଉଁ ଥାଉଁ
କେ ପାରିଲେ ଆସି ତୋତେ ରକ୍ଷାକରିନେଉ
ରେ ରେ ପାଣ୍ଡବା ପୂରିଲା ତୋହର ଆୟୁଷ
ରେ ରେ ପାଣ୍ଡବା କାଟିବି ତୋ ଦେହର ମାଂସ
ଆରେ ଭୀମା ସୁମର ତୁ ତୋ ଇଷ୍ଟ ଯେ ଅଛି
ପିତା ମାତାକୁ ସୁମର ମରଣ ନିକଟେ ।
ରେ ରେ ପାଣ୍ଡବା ବୋଲଇ ପରା ବଡ଼ବୀର
ଭୁଜା ପରାୟେ ପିଞ୍ଜିବି ତୋହର ଶରୀର ।
ରେ ରେ ପାଣ୍ଡବା ତୁହି ତ ବଡ଼ଗର୍ବ କଲୁ
କାହିଁଗଲା ସେ ଗାରିମା ମୋ ହାତରେ ମଲୁ ।
ଆରେ ପାଣ୍ଡବା ବୋଲଉ ନାମ ବୃକୋଦର
ଆଉ କି ମୋ ହାତୁ ତୁହି ହୋଇବୁ ଉଦ୍ଧାର
ଆରେ ପାଣ୍ଡବା ବୋଲଇ ଦ୍ୱିତୀୟ ଶମନ
ଶମନ ପେଷିଛି ମୋତେ ନେବ ତୋ ଜୀବନ ।
ଆରେ ଭୀମ କାହିଁଗଲା ତୋ ଅକ୍ଷୟ ଗଦା
ଆରେ ପାଣ୍ଡବା କପାଇଁ ମାରୁନାହିଁ କୁଦା ।
ପାଣ୍ଡବା ପାଣ୍ଡବା କହି ଉଠିଣ ଗରଜ
ବୋଇଲା କପାଁ ଶୋଇଛୁ ଏହି ରଣମଝି ।
ଯମ ନଗରେ ତୋ କଥା ଆଜ ପଡ଼ିଲାଣି
ଚିତ୍ରଗୁପତ ତୋହର ପାଞ୍ଜି ଯୋଚୁଲାଣି ।
ଯମ ପେଷିଅଛି ମୋତେ କରି ତୋ ଶମନ
ଯମପୁର ଦେଖିବୁ ତୁ ଆଜ ଭୀମସେନ ।

ହେଳକୁ ହେଳ ପ୍ରତିଜ୍ଞା କରନ୍ତେ ବହୁତ
ଶୁଣି ଶକୁନି ମନରେ ହୋଇଲା ଦୁଃଖିତ ।
ଶାଲ୍ୟରାଜା କର୍ଣ୍ଣବୀର ଶ୍ରୀମାନଗୋବନ୍ଦ
ଦୁଃଶାସନ କୋପ ଦେଖି ହୁଅନ୍ତି ଆନନ୍ଦ ।
ଶକୁନି ବୋଇଲା ଧନ୍ୟ ଧନ୍ୟ ଦୁଃଶାସନ
ନିଷ୍ଠୁରେ ନାଶଗଲା ଆଜ ଭୀମସେନ ।
ଧର୍ମ ଯୁଧିଷ୍ଠିର ଦେଖି ହୋଇଲେ ମୂର୍ଚ୍ଛିତ
ବୋଇଲେ ଆଜ ବୁଡ଼ିଲା ମୋହର ବୋଇତ ।
କେତେ କେତେ ବଳବନ୍ତ ଅସୁର ମାଇଲୁ
କଞ୍ଚିତ ଯୁଦ୍ଧରେ ପଡ଼ି ଏବେ ପ୍ରାଣଦେଲୁ ।
ଅନାଥ ବାନ୍ଧବ ମୋର କେଣେ ଛାଡ଼ିଗଲୁ
ଆପଦ ସମୁଦ୍ରେ ଏବେ ଭେଳା ବୁଡ଼ାଇଲୁ ।
ବାବୁରେ ତୋ ନାମଶୁଣି ତ୍ରାସକରେ ଯମ
କେତେ ବଳିଷ୍ଠମାନଙ୍କ ହରିଛୁ ଜୀବନ ।
କୁମ୍ଭକ ଦୈତ୍ୟକୁ ମାରି ରଖିଲୁ କୈଳାସ
ବଧିଲୁ ସ୍ୱହସ୍ତେ ତୁହି ତାରାକ୍ଷି ରାକ୍ଷସ ।
ଦେବଲୋକଙ୍କୁ ଦୁର୍ଲ୍ଲଭ ତୋର ବୀରପଣ
ମୋ ମନ୍ଦ କପାଳକୁ ତୁ ହାରିଲୁ ପରାଣ ।
ଏହିରୂପେ ଶୋକ କଲେ ଧର୍ମ ଯୁଧିଷ୍ଠିର
ଅତି ବିକଳେ କାନ୍ଦିଲେ ପାର୍ଥ ଧନୁର୍ଦ୍ଧର
ଅଗାଧ ସମୁଦ୍ରେ ଭେଳା ବୁଡ଼ାଇଲୁ ଭାଇ
ତୁମ୍ଭ ବିହୀନେ ବଞ୍ଚିବା ଭଲ ନ ଦିଶଇ ।
ନକୁଳ କଲେକ ଶୋକ ଏହି ପରକାରେ
ପାଣ୍ଡବେ ଭାବିଲେ ଭାଇ ତୁମ୍ଭ ଅଭାବରେ ।
ଅନାଥର ବନ୍ଧୁ ଭାଇ ଦର୍ପୀ ଦର୍ପହାରି
ଥିଲ ଦୁଷ୍ଟଜନଙ୍କର ଗର୍ବ ଖର୍ବକାରୀ ।
ସୁଭଦ୍ରା ହରଣ କାଳେ ଯେବେ ଯାଇଥିଲ
କୋଟି କୋଟି ଯାଦବଙ୍କୁ ପରାଜୟ କଲ ।
କିର୍ମୀରି କୁମ୍ଭୀରି ବକ ହିଡ଼ମ୍ବକ ମାରି
ହେ ଭାଇ ନିଜ ମହିମା କରିଥିଲ ଜାରି ।
ଏପରି ତିନିଭାଇଙ୍କ ଶୋକେ ଜଗନ୍ନାଥ
ସମ୍ଭାଳି ନପାରି କଲେ ଛଳ ଛଳ ନେତ୍ର ।
ବୋଇଲେ ହେ ଭୀମସେନ କାହିଁ ଚାଲିଗଲ
ମଝି ସମୁଦ୍ରକୁ ନେଇ ନାବ ବୁଡ଼ାଇଲ ।
ଆହେ ରଣରଙ୍ଗା ଶତ୍ରୁ ଦେଖିକରେ ଶଙ୍କା
କେଣେ ଚାଲିଗଲ ପ୍ରିୟଜନେ କରି ଏକା ।

ଏହିପରି ଗାଢ଼ଶୋକ କରନ୍ତେ ମାଧବ
ନାକେ ହାତଦେଇ ହସିଦେଲେ ସହଦେବ ।
ତାହାଦେଖି ପଚାରିଲେ ଦେବ ନାରାୟଣ
କିପାଇଁ ହସିଲ କହ ଏହା ବିବରଣ ।
ଆମ୍ଭେମାନେ ଶୋକକରୁ ଯାହାର ନିମନ୍ତେ
ତୁମ୍ଭେ ନାକେ ହାତଦେଇ ହସିଲ ଯେମନ୍ତେ ।
ପାଣ୍ଡବକୁଳ ରକ୍ଷକ ଏକା ବୃକୋଦର
ତାଙ୍କପାଇଁ ଶଙ୍କାକରେ ଶତ୍ରୁ ନିରନ୍ତର ।
ଜରାସନ୍ଧ ଅଷ୍ଟାଦଶ ରଥ ଦେଲା ଧାଡ଼ି
ଭୀମ ତାହାକୁ ମାଇଲେ ତାହାସଙ୍ଗେ ଲଢ଼ି ।
ନରପତିଗଣ ମୂଷା ଭୀମ କାଳନାଗ
ଶୂରବନ୍ତପଣେ କିଏ ଅଛି ତାଙ୍କ ଆଗ ।
ଠିଆ ହୋଇଥିବେ ଯେବେ ଅସ୍ତ୍ରଧରି ହାତେ
କେଉଁ ବୀର ରଣକରି ଯିବ ତାଙ୍କସାଥେ ।
କୁମ୍ଭୀର ଦୈତ୍ୟକୁ ଜଳେ କରିଲେ ସଂହାର
ଯାର ମୂର୍ତ୍ତି ଦେଖି ତ୍ରାସ ଲଭନ୍ତି ଅମର ।
ଗୁପତରେ ସ୍ତ୍ରୀରୂପେ କୀଚକର ପ୍ରାଣ
ଯେହୁ ହରିଥିଲେ ଆଜି ଲଭିଲେ ମରଣ ।
ପାଣ୍ଡବ ବଳର ସବୁ ବୁଡ଼ିଲା ଗାରିମା
ନ ମାଡ଼ୁଥିଲେ ଶତ୍ରୁ ଏ ଯାହାବଳେ ସୀମା ।
ଏମନ୍ତ ହେ ରଣଷଣ୍ଢ ଚାଲିଲେ ଉପେକ୍ଷି
କହ ସହଦେବ ତୁମ୍ଭେ ହସିଲ କାହିଁକି ।
ତାହାଶୁଣି ସହଦେବ ହୁଅନ୍ତେ ନିରୁତ୍ତର
ଦୁଃଖିତ ହୋଇ କହିଲେ ଧର୍ମ ଯୁଧିଷ୍ଠିର ।
ମାଦ୍ରୀଦେବୀ ଯେଉଁକାଳେ ପ୍ରାଣେ ହେଲେହତ
କୋଇନ୍ତା ମାତା ପାଳିଲେ ଏ ଥିଲେ ବାଳୁତ ।
ହେ ହରି ସର୍ବଦା ସ୍ନେହ ଯାଙ୍କଠାରେ ମୋର
ଏହାଙ୍କର ଅଭିଳାଷ ପୂରାଏ ସତ୍ୱର ।
କୁମ୍ଭୀର ଦୈତ୍ୟକୁ ମାତା ଦେଇଥିଲେ ନେଇ
ଭୀମକୁ ଦେଇ ଏହାଙ୍କୁ ରକ୍ଷାକଲି ମୁହିଁ ।
ଅରଣ୍ୟରେ ଚାରିଭାଇ ମଲେ ଜଳେ ପଡ଼ି
ଏହାଙ୍କୁ ଆଣିଲି ଭୀମ ଅର୍ଜ୍ଜୁନକୁ ଛାଡ଼ି ।
ପୁଣି ମାତା ଦେଉଥିଲେ ବକାସୁର ମୁଖେ
ଯାଙ୍କୁ ରଖି ପଠାଇଲି ଭୀମ ଇଚ୍ଛାସୁଖେ ।
ଏତେ କାଳରେ ଜାଣିଲି ଏହାଙ୍କର ଗୁଣ
ମୋଠାରେ କଲେ ବୈମାତ୍ରୀ ଭାଇ ଆଚରଣ ।

ଏ ମୋହର ନନ୍ଦନଇ ଭୁଲ୍ ଜାଣିଥିଲି
କପଟେ ପୁଚ୍ଛନ୍ତି ଯାଙ୍କ ହୃଦୟ ବୁଝିଲି ।
ମୃଣବନ୍ତ ଖାଇ ମୋର ହୋଇଲା ନିଧନ
ଆଉ କି ରଖିବ ମୋର ଏ ଛାର ଜୀବନ ।
ମୁଁ ମଲେ କି ଧନଞ୍ଜୟ ରହିବ ଜୀବତେ
ଏ ରହିବେ ଦୁର୍ଯ୍ୟୋଧନ ବଶରେ ନିଶ୍ଚିନ୍ତେ
ଏମନ୍ତ ନିଷ୍ଠୁର ବାଣୀ ସହଦେବ ଶୁଣି
କରଯୋଡ଼ି ଜଣାଇଲେ ଶୁଣ ଚିନ୍ତାମଣି ।
ଦୁଃଶାସନ ଦର୍ପକରି କିସ ବା କରିବ
ଭୀମଙ୍କର ଲୋମ ମାତ୍ର ଟାଳି ନ ପାରିବ ।
ଶତେକ ଯୋଜନ ଶତଶୃଙ୍ଗ ପରବତ
ଭୀମ ପଡ଼ନ୍ତେ ଲଂଘିଲେ ସେ ଗିରି ଉଚିତ ।
ସେହି ପର୍ବତ ଉପରେ ଶଏ ଶୃଙ୍ଗ ଅଛି
ଗୋଟିକ ସାତ ଯୋଜନ ଉଚ୍ଚ ସେ ହୋଇଛି
ପାଦ ହଲାଇ କାନ୍ଦନ୍ତେ ତହିଁ ଭୀମ ଭାଇ
ଅଙ୍ଗୁଳି ଲାଗି ଶୃଙ୍ଗେକ ଭାଜିଗଲା ତହିଁ ।
ଶୃଙ୍ଗ ଭାଙ୍ଗନ୍ତେ ସେ ଗିରି ମହାକ୍ରୁଦ୍ଧ ହେଲା
ଭୀମକୁ ଚାହିଁ ଏପରି ବଚନ କହିଲା ।
ବାଳକ ହୋଇ ଭାଙ୍ଗିଲୁ ଯେଣୁ ଶୃଙ୍ଗ ମୋର
ଦେଉଛି ଶାପ ପ୍ରଥମ ଯୁଦ୍ଧେ ତୁହି ହାର ।
ଗିରିର ଏପରି ଶାପ ଶୁଣି ଆମ୍ଭ ମାତ
କ୍ରୋଧ ହୋଇଣ ବୋଇଲେ ଶୁଣରେ ପର୍ବତ
ଦୁଇ ଘଡ଼ିର ଅଟଇ ମୋହର କୁମର
ଏହାକୁ ତୁ ଶାପଦେଲୁ କେମନ୍ତ ପ୍ରକାର ।
ତୋତେ ମୁହିଁ ଶାପଦେଲି ଶୁଣରେ ଅଚଳ
ତୋ ଦେହକୁ ଖଣ୍ଡ ଖଣ୍ଡ କାଟିବେ ସକଳ ।
ଗିରି ବୋଇଲା ମୋ ଶାପ ନୋହିବ ଯେ ଆନ
ପ୍ରଥମ ଯୁଦ୍ଧେ ହାରିବ ତୋର ଏ ନନ୍ଦନ ।
ତଦପରେ ମୋତେ ଏହୁ ସ୍ମରଣ କରିଲେ
ଶତସିଂହ ପରାକ୍ରମ ହେବ ଜାଣ ଭଲେ ।
ଧନକର ଇନ୍ଦ୍ର ଚନ୍ଦ୍ର ଯା ସଙ୍ଗ ସମର
କଲେ ହିଁ ଜୟେ ଜିଣିବ ଏ ତୋର କୁମର
ଶତଶୃଙ୍ଗ ଗିରିବର ଶାପର ଫଳରେ
ଭୀମ ପଡ଼ିଛନ୍ତି ତଳେ ପ୍ରଥମ ଯୁଦ୍ଧରେ ।
ସଂଗ୍ରାମ ବେଳରେ ଶତଶୃଙ୍ଗଙ୍କୁ ସ୍ମରଣ
ଏକାବେଳେ ଭୁଲିଛନ୍ତି ଆହେ ନାରାୟଣ ।
ତୁମ୍ଭେ ଶତଶୃଙ୍ଗ ନାମ ଶଙ୍ଖେ ବାଦ୍ୟକର
ଭୀମ କର୍ଣ୍ଣକୁ ଶୁଭିବ ଯେବଣ ପ୍ରକାର ।
ତୁମ୍ଭେ ପ୍ରଭୁ ଅନ୍ତର୍ଯ୍ୟାମୀ ଜଗତ ପାଳକ
ଏ ବଡ଼ ବଚନ ଜାଣୁ ଜାଣୁ କର ଶୋକ ।
ଏହା କହି ସହଦେବ ହୋଇଲେ ନୀରବ
ଶୁଣି ସାନନ୍ଦ ହୋଇଲେ ଯୁଧିଷ୍ଠିର ଦେବ ।
ଏବେ କଉରବ ବଳ ଦେଖିଣ ଏମନ୍ତ
ଦୁର୍ଯ୍ୟୋଧନ ମନେ ମନେ ହୁଅଇ ଭୟତ ।
କଉରବ ସେନାପତି ଶକୁନି ବଳରେ
ଶତ୍ରୁ ଜିତ ପତାକା ସେ ବାନ୍ଧିଲେ ରଥରେ ।

---

## ଦୁଃଶାସନବଧ ଓ ଦ୍ରୌପଦୀଙ୍କର ବେଣୀ ବନ୍ଧନ

ପୁଣି ପୁଚ୍ଛନ୍ତି ବଙ୍ଗଦେଶ ନୃପମଣି
ଶୁଣ ହେ ଅଗସ୍ତି ମୁନି ମୁନିଙ୍କ ଅଗ୍ରଣୀ ।
ତୁମ୍ଭର ମୁଖରୁ ଶୁଣି ଭାରତ ଆଖ୍ୟାନ
ପାପ କଳୁଷ ଦେହରୁ କଲି ପ୍ରକ୍ଷାଳନ ।
ତଳେ ପଡ଼ିଥିଲେ ଭୀମ ହୋଇ ରଣ ଭୋଳ
ମାଡ଼ି ବସିଥିଲା ଦୁଃଶା ତାଙ୍କ ବକ୍ଷସ୍ଥଳ ।
ତଦପରେ କେଉଁକଥା କରିଲେ ପାଣ୍ଡବେ
ସେହିକଥା ଶୁଣିବାକୁ ମୋର ଇଚ୍ଛା ଏବେ ।
କହନ୍ତି ଅଗସ୍ତି ମୁନି ଶୁଣ ନୃପବର
ପାଞ୍ଚଜନ୍ୟ ଶଙ୍ଖ ଧରି ଯାଦବ ଈଶ୍ୱର ।
ଶତଶୃଙ୍ଗ ଶତଶୃଙ୍ଗ ବୋଇଲେ ଦ୍ରୁତରେ
ଭୀମ ପଡ଼ିଥିଲେ ତଳେ ଶୁଣିଲେ କର୍ଣ୍ଣରେ ।
ଶତଶୃଙ୍ଗଙ୍କୁ ସ୍ମରଣ କଲେ ତହୁଁ ଭୀମ
ଶଏ ଏକ ସିଂହର ତା ହେଲା ପରାକ୍ରମ ।
ଏକାଉର ଶତସିଂହ ବଳକୁ ପ୍ରକାଶି
ଉଲଟାଇ ବୃକୋଦର ରୂପେ ମାଡ଼ିବସି ।
ନୟନ ଛଟକେ ମାଡ଼ି ବସିଲେ ଦୁଃଶାକୁ
ଗୋଚର ନୋହିଲା ତାହା ଉଭୟ ଥାଟକୁ ।
ମନ୍ଦରକୁ ହିମବନ୍ତ ମାଡ଼ି କି ବସିଲା
କାଳପାଶରେ କୃତାନ୍ତ ଯେହ୍ନେ ଆକର୍ଷିଲା ।
ସେହିପରି ବିକାଶଇ ବୃକୋଦର କାୟ
ଆବର ଗର୍ଜେ ବିକ୍ରମ ସିଂହର ଯେ ପ୍ରାୟ ।

ଗର୍ଜନଘାତେ କମ୍ପାଇ ସେ ରଣମଣ୍ଡଳ
ତିନିଲୋକକୁ ଅଗୋଚର ଭୀମଙ୍କର ବଳ ।
ଛେଦ ଛେଦ ହମି ଦନ୍ତେ ଚିପିଣ ଅଧର
କମ୍ପାଇଲେ ତେତେବେଳେ ଶତ୍ରୁଙ୍କ ଅନ୍ତପୁର ।
ବାମହସ୍ତେ ବୃକୋଦର ଚାପୁଡନ୍ତି ଚୋଟି
ଦକ୍ଷିଣ ହସ୍ତେ ମାରନ୍ତି ପୁଣି ବଜ୍ରମୁଷ୍ଟି ।
ଏକପାଦେ କଟି ଅନ୍ୟପାଦେ ବକ୍ଷସ୍ଥଳ
ଚପି ଧରିଛନ୍ତି ବୀର ହୋଇ କ୍ରୋଧାନଳ ।
ତର୍ଜନ ଗର୍ଜନ କରି ବିଦାରନ୍ତି ମୁଖ
ଦୁଃଶାସନ ନାସାବାଟେ ବହଇ ଶୋଣିତ ।
ବିକ୍ରମ ସିଂହ ପରାୟେ ଭୀମ ମହାବଳ
ମାଡ଼ିବସିବାରୁ ଦୁଃଶା ହୋଇଲା ଅଚଳ ।
ପୁଣି ବୋଇଲେରେ ପାପିକୌରବ ତୁ ଶୁଣ
ଆଜି ମୋ ହାତରେ ତୋର ନିଶ୍ଚୟ ମରଣ ।
ଆରେ ପାମର କୌରବ କୁଳର ପାଂଶୁଳ
ଆମ୍ଭ ଅଭିମାନର ଯେ ଦେବ ଏହିଫଳ ।

ଆରେ ଦୁଃଶାସନ ନଷ୍ଟେଁ ହେଲୁ ତୁ ନିରେଖ
କେ ରଖି ପାରିଲେ ରଖୁ ଆସି ମୋରପାଶ ।
ତୁହି ତ ମରିଲୁ ଆଜ ସମରେ ନିଶ୍ଚୟ
ଆଜହୁଁ ସହାୟ ହୀନ ହେଲ କୁରୁରାୟ ।
ଆକାଶେ ଥାଇ ଦେଖନ୍ତି ଅମର ଯେତେକ
ଭୀମ ଡାକନ୍ତି ଏହାକୁ କେ ରଖିବ ରଖ ।
ହେ ଅମରନାଥ ତୁମ୍ଭେ ଅଟ ବଜ୍ରଧର
ପାରିଲେ ଏହାକୁ ବେଗେ ଆସି ରକ୍ଷାକର ।
ଆହେ ପ୍ରେତପତି ତୁମ୍ଭେ ପ୍ରାଣୀଙ୍କ ନିୟତ
ପାରିଲେ ଏହାକୁ ରଖ ଆସି ଶୀଘ୍ରଗତ ।
ଆହେ ଚନ୍ଦ୍ର ଆହେ ସୂର୍ଯ୍ୟ ଆହେ ବ୍ରହ୍ମା ବହ୍ନି
କେ ପାରିଲେ ରକ୍ଷାକର ଏହାକୁ ଯାଅ ନେଇ ।
ଏହାକହି କାଳଚକ୍ର ପ୍ରାୟ ବେନିଡୋଳା
ନିରନ୍ତର ବୁଲାଇଲେ ପବନର ବଳା ।
ତାହାଦେଖି ତିନିଲୋକ ହୋଇଲେ ଶଙ୍କିତ
ବାୟୁ ଭୟେ ନ ଚଳିଲା ଶୁଭିଲା ନିର୍ଘାତ ।
ତହୁଁ ବୋଇଲେକ ଦୁଃଶା ଶୁଣ ମୋ ବଚନ
ତୋତେ ରଖିବାକୁ କେହି ନୋହିଲେ ଭାଜନ
ଏହାକହି ପାତାଳକୁ ପୁଣି ଦେଲେ ଚାହିଁ
ବୋଇଲେ ହେ ଶେଷ ପଦ୍ମ କର୍କୋଟକ ଅହି ।

ଆବର ଶୁଣ ହେ ତୁମ୍ଭେ ଅନନ୍ତବାସୁକି
ଦୁଃଶାସନର ଜୀବନ ରଖି ପାରିବ କି ।
ଆହେ ନାଗପାଳେ ନାଗ କରଅଛ ରକ୍ଷା
ଦୁଃଶାସନେ ରକ୍ଷି କର ମୋ ସଙ୍ଗରେ କକ୍ଷା ।
ଭୀମ ଡାକନ୍ତେ ଭୁଜଙ୍ଗ ରାଜକୁ କ୍ରୋଧରେ
ବାସୁକି କମ୍ପିଲେ ନାଗଲୋକ ସହିତରେ ।
ପୁଣି ସେ ଦିଗେ କୌରବ ସୈନ୍ୟ ରହିଛନ୍ତି
ଭୀମସେନ ସେ ଦିଗକୁ ଅନାଇଁ କହନ୍ତି ।
ଆରେ ଶଲ୍ୟ ରେ ଶକୁନି ଆରେ କୁରୁଗଣ
ପାରିଲେ ଦୁଃଶାସନର ରଖ ଆସି ପ୍ରାଣ ।
ପିଲାକାଳୁ ଆଜଯାଏ ହୋଇଥିଲେ ସଖା
ମାରୁଛି ଦୁଃଶାସନକୁ କରୁନାହଁ ରକ୍ଷା ।
ଜାଣିଲି ସମ୍ପଦ ବେଳେ ସବୁ ମୋର ମୋର
ବିପଦ କାଳରେ କେହି ନୁହନ୍ତି କାହାର ।
ଆରେ କର୍ଣ୍ଣ ମହାମଲ୍ଲ ତୁହି ତ ବୋଲାଉ
ଦୁର୍ଯ୍ୟୋଧନ ରାଜାଠାରୁ ଠକ ଠକ ଖାଉ ।
ଭୀଷ୍ମ ଦ୍ରୋଣ ମଲେ ଏବେ ତୋତେ ସେନାପତି
କରି ତୋ ବାହୁକୁ ଆଶ୍ରା କରିଛି ନୃପତି ।
ତୁ ପାରିଲେ ମୋ ହାତରୁ ଦୁଃଶାସନ ପ୍ରାଣ
ରକ୍ଷି ପାରିବୁ ତ ରଖ ଆସି ଏହିକ୍ଷଣ ।
ଅସମର୍ଥ କାଳକୁ ତୁ ନୋହିଲୁ କାରଣ
ଧିକରେ ତୁହି ଧିକରେ ଧିକ ବୀରପଣ ।
ଏହା କହି ମହାକୋପେ ଚାହାନ୍ତି ତରଟି
କଉରବ ସୈନ୍ୟ ସବୁ ପଳାଇଲେ ହଟି ।
ତହୁଁ ବୋଇଲେ ପାବନ ଦୁଃଶାସନେ ଚାହିଁ
ନୋହିଲେ ଭାଜନ ତୋତେ ରଖିବାକୁ କେହି ।

ତହୁଁ ନିଜଆଡେ ପ୍ରତି ଚକାଇଲେ ଦୃଷ୍ଟି
ରକ୍ଷି ପାରିବ ତ ରଖ ଆସି ହେ ଯୁଧିଷ୍ଠି ।
ତୁମ୍ଭ ଗୁଣବନ୍ତ ଭାଇ ଅକାଳେ ମରୁଛି
କେତେକେତେ ଉପକାର ସେ ନ କରିଛି ।
ଆହେ ଧୃଷ୍ଟଦ୍ୟୁମ୍ନ ତୁମ୍ଭେ ଅଟ ମହାବୀର
ପାରିଲେ ଦୁଃଶାସନକୁ ଆସି ରକ୍ଷାକର ।
ହେ କପିକେତନ ତୁମ୍ଭେ ବଳିଷ୍ଠଙ୍କ ଗୁରୁ
ପାର ଯେବେ ଦୁଃଶାସନ ରଖ ମୋ ହସ୍ତରୁ ।
ଆରେ ଅର୍ଜ୍ଜୁନ ତୋ ନାମ ଅଟେ ସବ୍ୟସାଚୀ
ଦୁଇହାତେ ଅସ୍ତ୍ର ଚାଳୁ ଶତ୍ରୁ ଯାଏ ଘୁଞ୍ଚି ।

ଲକ୍ଷ ବଳର ଗାଣ୍ଡିବ ହସ୍ତେ ଅଛୁ ଧରି
ପାରୁ ଯେବେ ଦୁଃଶାସନ ନାଅ ତୁ ଉଦ୍ଧାରି ।
ଆହେ ଶ୍ରୀକୃଷ୍ଣ ତୁମ୍ଭେ ତ ଚତୁର୍ଦ୍ଧା ମୂରତି
ସୁଦର୍ଶନ ଚକ୍ର ଅଟେ ତୁମ୍ଭ ଆଜ୍ଞାବର୍ତ୍ତୀ ।
ପୁଣି ହିଁ ସଂସାର ତୁମ୍ଭେ କରୁଛ ପାଳନ
ଜଗତ ଜୀବମାନଙ୍କ ମଙ୍ଗଳ ବିଧାନ ।
ପାର ଯେବେ ଆସ ପ୍ରଭୁ ମୋର ସାହାଯକୁ
ଉଦ୍ଧାରିଣ ନାଅ ଏହି କୌରବ କରକୁ ।
ଆସ କୃଷ୍ଣ ଆସ କୃଷ୍ଣ ବିଳମ୍ବ ନ କରି
ଏହିକ୍ଷଣି ଦୁଃଶାସନ ଯିବ ପ୍ରେତପୁରୀ ।
ଶୁଣି ଦୁଃଶାସନ କହେ ଲଭିବୁ ମରଣ
ରଖି ନ ପାରିବେ କୃଷ୍ଣ ଯେ କାଳେ ତୋ ପ୍ରାଣ
ପୁନଃ ପୁନଃ ଶ୍ରୀକୃଷ୍ଣଙ୍କୁ ଡାକନ୍ତେ ପାବନି
ସହି ନ ପାରି ଉଠିଲେ ବୀର ଫାଲଗୁନି ।
କ୍ରୋଧେ କମ୍ପମାନ ହେଲ ସର୍ବ ଅବୟବ
ପାଶୁପତାସ୍ତ୍ର କାଢ଼ିଲେ ଧରିଣ ଗାଣ୍ଡିବ ।
ବନ୍ଧିବା ନିମନ୍ତେ ଯହୁଁ ଉଦ୍ୟମ କରିଲେ
ଦେଖି ଭଗବାନ ତାଙ୍କୁ ଧରି ପକାଇଲେ ।
ତହୁଁ ଅର୍ଜୁନ ବୋଲିଲେ ଶୁଣ ଚକ୍ରପାଣି
ଭୀମ ମୁଣ୍ଡ ନିଷ୍ଟୟ ମୁଁ ପକାଇବ ହାଣି ।
ଅନ୍ୟାୟ ପ୍ରତିଜ୍ଞାମାନ କଲା ଭୀମସେନ
ଦେବତାମାନଙ୍କୁ ନିନ୍ଦା କଲା ଦେଖୁଜନ ।
ଯୁଧିଷ୍ଠିରଙ୍କି ନିନ୍ଦାକଲା କଟୁକଥା କହି
ମୋର କଥା ଗୁଡ଼ ମନେ କରୁ ଧରିନାହିଁ ।
ସର୍ବ ସହିଲି ସହିବ ଯେତେ ନିନ୍ଦାବାଣୀ
ତୁମ ନିନ୍ଦା ନ ସହିବି କେବେ ଚକ୍ରପାଣି ।
ତୁମ୍ଭ ଉଦରେ ଦେଖିଲି ମହୀ ନବଖଣ୍ଡ
ସପ୍ତଦ୍ୱୀପ ଆଦିକରି ଚଉଦ ବ୍ରହ୍ମାଣ୍ଡ ।
ତୁମ୍ଭସମାନ ହେ ପ୍ରଭୁ କେ ଅଛି ସଂସାରେ
ତୁମ୍ଭଙ୍କୁ ସେ ନିନ୍ଦାକଲା କୁତ୍ସିତ କଥାରେ ।
ଛାଡ଼ ପ୍ରଭୁ ଭୀମ ମୁଣ୍ଡ ପକାଇବି ହାଣି
ଦୁଃଶାସନକୁ ଛଡ଼ାଇ ଆଣିବି ଏକ୍ଷଣି ।
ସହିଲି ସର୍ବ ପ୍ରତିଜ୍ଞା ମୁହିଁ ବାସୁଦେବ
ଦେହ ଧରି ତୋ ଅବଜ୍ଞା କେ ସହି ପାରିବ ।
ତାହା ଶୁଣି ଜଗନ୍ନାଥ ଭୁଜେ କରି କୋଳ
ଛଡ଼ାଇ ନେଲେ ପାର୍ଥଙ୍କ ଅସ୍ତ୍ରାଦି ସକଳ ।

ବୋଇଲେ ତାହାଙ୍କୁ କୋପ କରୁ କେ ଅର୍ଜୁନ
ଯାହାର ନାମେ କମ୍ପଇ ଏ ତିନି ଭୁବନ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ଆଦି ସକଳ ଅମରେ
ଯାର ପାଠି ଶୁଣିକରି ଭୟେ ଥରହରେ ।
ପାତାଳପୁରରେ ଥିଲେ ଅଷ୍ଟକୁଳ ଅହି
ଭୀମଙ୍କ ନାଦରେ କେହି ନ ପାରିଲେ ରହି ।
ତୁମ୍ଭେ କାହିଁକି କରୁଛ ପ୍ରତିଜ୍ଞା ଏପରି
ତୁମ୍ଭ ବଳେ ଭୀମଙ୍କର ପାର କିସ କରି ।
ଦ୍ୱିସେନ ପ୍ରଭଣ ଭୀମ କରେ ସ୍ନାନରଣି
ବିଶ୍ୱରୂପ ପ୍ରକାଶିଛି ଶତ୍ରୁର ମାରଣେ ।
ମତ୍ତଗଜେ କବଇ ସେ ତାର ନାହିଁ ହେଳୁ
ସୁସମୋଦ ବୁଡ଼ାଇ ତୁ ଆଶା କରୁ ମୃତ୍ୟୁ ।
ଅନେକ ହିଂସା ଦେବ ମାରିବେ ବଇଶି
ପେଟ ଚିରି ପିଠି ଆଣ୍ଟା କରି ନ ବସୁରି ।
ତୁମ୍ଭ ଆମ୍ଭ ଆଦିକରି ଯେତେ ଛତ୍ର ସୈନ୍ୟ
ଏତେବେଳେ ଭୀମସଙ୍ଗେ ନୋହିବୁ ସମାନ ।
ତିନିଲୋକରେ କେହି ତାକୁ ନାହାନ୍ତି ଜିଣନ୍ତା
ବୃକୋଦର ମୂର୍ତ୍ତି ଧରି ବଡ଼ ବଳବନ୍ତା ।
ଏହା କହି ଦେଖ ଦେଖ ବୋଲି ଭଗବାନ
କୋଳକୁ ଆଉଜାଇଣ ଆଣିଲେ ଅର୍ଜୁନ ।
ଭୀମଙ୍କ ନୃସିଂହ ମୂର୍ତ୍ତି ନେଇ ଦେଖାଇଲେ
ସେ ମୂରତି ଦେଖି ପାର୍ଥ ବଡ଼ ଭୟ କଲେ ।
ବିକଟାଳ ମୁଖ ପୁଣି ସୁଘଣ ଶରୀର
ଆକାଶକୁ ଲାଗିଅଛି ଭୀମଙ୍କର ଶିର ।
ଦେଖି ନୟନ ବୁଜିଲେ ପାର୍ଥ ବୀରମଣି
ଭୟ ପାଇ ନନ୍ଦଘୋଷ ଉଠିଲେ ସେକ୍ଷଣି ।
ରଥେ ଥାଇ ଦେବଦତ୍ତ ଶଙ୍ଖ କଲେ ନାଦ
ସେ ଶବଦେ ଉଠିଲୁଁ ହୋଇଲା ସୁବନ୍ଧ ।
ଭୀମ ବୋଇଲେ ରେ ଦୁଃଶା ହେଲୁ ନିଃସହାୟ
ଆସି ରଖନ୍ତୁ ତୋହର ବାଲ୍ୟସଖାତୟ ।
ଆରେ ପାମର କୌରବ ବୋଲଉ ତୁ ବଳୀ
ତୋର ମାଂସ କାଟି ଆଜ ଦେବି ବଷାବଳ ।
ରେରେ କୌରବା ସ୍ମର ମାତା ପିତା ତୋର
ତୋ ଇଷ୍ଟ ଦେବତା ନାମ ସ୍ମର ପାମର ।
ରେ ରେ ଦୁଃଶାସନ ଡାକ ତୋ ଅନ୍ଧ ବାପକୁ
ତୋତେ ରକ୍ଷାକରୁ ଏବେ ଆସି ମୋପାଶକୁ ।"

ଆରେ ରେ କୌରବା ଯମ ଖୋଜୁଛି ତୋପାଇଁ
ଆଜି ଯମେ ଭେଟ ହେବୁ ସ୍ୱକର୍ମିକୁ ଭୁଞ୍ଜି ।
ଯମ ଦୂତଗଣେ ଏବେ ପେଷିଛନ୍ତି ମୋତେ
ଯେ ଯମପୁର ନେଇ ଦେଖାଇବ ତୋତେ ।
ଏହା କହି ପ୍ରହାରିଲେ ଏକ ବଜ୍ରମୁଠ
ଶବଦ ଶୁଭିଲା ଯେହ୍ନେ ପଡ଼ିଲା ନିର୍ଘାତ ।

ଅର୍ଘ୍ୟଥାଳ ଯେନି କରେ ଧରି ରହିଛନ୍ତି
ଏହିକାଳେ ସହଦେବ ପ୍ରବେଶ ହୁଅନ୍ତି ।
ମନ୍ଦିରବର ପ୍ରବେଶିଲେ ଯହୁଁ ହୋଇ ଏକା
ଦ୍ରୌପଦୀ କରିଲେ ମନେ ବହୁତ ଆଶଙ୍କା ।
ତାଙ୍କୁ ଚାହିଁ ସହଦେବ ହୋନ୍ତେ ହସ ହସ
ସତୀଙ୍କ ମନରୁ ତହୁଁ ଛାଡ଼ିଲା ସନ୍ଦେଶ ।



ସହଦେବଙ୍କୁ ଅନାଇ ଭୀମ ମହାମତ
ବୋଇଲେ ଦ୍ରୌପଦୀ ଆଣ ଯାଇ ଶୀଘ୍ର ଗତ ।
ଭୀମଙ୍କ ଆଦେଶ ପାଇ ମନ୍ତ୍ରୀ ଚୂଡ଼ାମଣି
ପୁଷ୍ପକ ରଥେ ଚଳିଲେ ଯଥା ଯାଜ୍ଞସେନୀ ।
ଏଣେ ତହିଁକ ପୂର୍ବରୁ ଦ୍ରୁପଦକୁମାରୀ
ବସିଛନ୍ତି ଭୀମଙ୍କର ପଥ ଅନୁସରି ।

ସହଦେବ ବୋଇଲେ ଗୋ ସତୀ ଆସ ଆସ
ଆଜି ବନ୍ଧନ କରିବ ମୁକୁଳିତ କେଶ ।
ତେର ବରଷ ପୁଣି ପଞ୍ଚପୁତ୍ର ଦିନେ
ଭୀମ ପ୍ରତିଜ୍ଞା ପୂରଣ ହେଲା ସୁବଦନେ ।
ଶୁଣି ଦ୍ରୁପଦକୁମାରୀ ହୋଇ ଆନନ୍ଦିତ
ପୁଷ୍ପକ ରଥରେ ଚଢ଼ି ଚଳିଲେ ତ୍ୱରିତ ।

ପଥେ ଯାଇ ପଚ୍ଚରିଲେ ଯୁଦ୍ଧ ବିବରଣ
ଏକ ଏକ କରି ମନ୍ତ୍ରୀ କରିଲେ ବଖାଣ ।
ଆଗେ ଦୁଃଶାସନ ମାଡ଼ି ବସିଲା ଭୀମଙ୍କୁ
କଉରବେ ଉପହାସ କଲେକ ଆମ୍ଭଙ୍କୁ ।
ଦୁଃସହ ପ୍ରତିଜ୍ଞା କଲା ଦୁଃଶା ସେହିକାଳେ
ପୁଣି ଭୀମ ଲେଉଟାଇ ପକାଇଲେ ତଳେ ।
ତ୍ରୈଲୋକ୍ୟ ମଧ୍ୟରେ ତାଙ୍କ ଦୁଃସହ ପ୍ରତିଜ୍ଞା
ତୁମ୍ଭଙ୍କୁ ନେବାପାଇଁକି ଦେଲେ ମୋତେ ଆଜ୍ଞା
ରଥରେ ଥାଇ ଦ୍ରୌପଦୀ ହୋଇଲେ ପ୍ରଚଣ୍ଡ
ମୋ ସ୍ୱାମୀ ଏ ଅବତାର ଆଜ ଧରିଛନ୍ତି ।
ତୁମ୍ଭର ଆପଦ ନାଥ ପଡ଼ୁ ମୋର ମାଥ
ଏତେଦିନେ ପୂର୍ଣ୍ଣକଲ ମୋର ମନୋରଥ ।
ଏମନ୍ତେ ଯୁଦ୍ଧସ୍ଥଳରେ ହୋଇଲେ ପ୍ରବେଶ
ଭୀମଙ୍କ ମୂରତି ଦେଖି ଦେବୀ କଲେ ହାସ ।
ରଥରେ ଥାଇଣ ଦ୍ରଉପଦୀ ପରଣାମି
ଏ ଅବତାର ହୋଇଲ ମୋହପାଇଁ ସ୍ୱାମୀ ।
ତୁମ୍ଭ ପାଦରଜ ପଡ଼ୁ ମୋହର ଯେ ମାଥ
ଏହା କହୁଁ କହୁଁ ପାଶେ ମିଳଲେ ଭରତ ।
ରଥରୁ ଉତ୍ତରି ଦେବୀ ହୋଇଲେ ହତାଶ
ସ୍ୱାମୀ ପାଶକୁ ଯିବାକୁ ନୋହିଲା ସାହସ ।
ତିନିତାଳ ଉଚ୍ଚ ଅଟେ ଦୁଃଶାସନ ଦେହ
ଚଉରତାଳର ପ୍ରମାଣ ପବନର ପୁଅ ।
ମନ୍ଦରକୁ ହିମଗିରି ଚପିଲାର ପରି
ସାତତାଳୁ ଉଚେ ଭୀମ ଦିଶନ୍ତି ସେପରି ।
ତାହା ଦେଖି ଯାଜ୍ଞସେନୀ କରନ୍ତି ବିଚାର
ପ୍ରକୃତରେ ନୁହନ୍ତି କି ଏହି ବୃକୋଦର ।
ଚନ୍ଦ୍ରମାକୁ ରାହୁ କବା କରେ ଝଣାଝଣି
ଭୟେ ଏ ବିଚାର କଲେ ଦ୍ରୁପଦ ଦୁଲଣୀ ।
ବୃକୋଦରଙ୍କ ପାଶକୁ ଯହୁଁ ସେ ନ ଗଲେ
ସହଦେବଙ୍କୁ ଅନାଇଁ ଭୀମ ଆଜ୍ଞାଦେଲେ ।
ଦ୍ରୌପଦୀଙ୍କ ଘେନିଆସ ମୋ ପାଶେ ସତ୍ୱର
ଜଣାଯାଏ ନ ଆସନ୍ତି ହୋଇ ଭୟାତୁର ।
ତାହା ଶୁଣି ସହଦେବ ହାତ ଧରି ନେଲେ
ବୃକୋଦର ସମୀପରେ ଉଭା କରାଇଲେ ।
ଦ୍ରୌପଦୀଙ୍କୁ ଚାହିଁ ଭୀମ ବୋଲନ୍ତି ବଚନ
ଭଲକରି ଦେଖ ମୋର ଶରୀର ବଦନ ।

ଗୁଣବନ୍ତ ପୁରୁଷ ଏ ବଡ଼ ହିତକାରୀ
ଏହାଙ୍କର ଗୁଣ ସ୍ତୁତି ନ ହେବ ସୁନ୍ଦରୀ ।
କୂଟ ପଣାକାଳର ଗୋ ଏହି ଦୁଃଶାସନ
ମନ ଲଗାଇ ଏହାକୁ ଭଲକରି ଚାହ ।
କେତେ ଉପକାର ଏ ଗୋ କରିଛନ୍ତି ତୁମ୍ଭର
ଏତେକାଳରେ ପଡ଼ିଛି ହାତରେ ମୋହର ।
ଏହା କହି ଦୁଃଶାପ୍ରତି ବୋଇଲେ ବଚନ
ଶୁଣରେ କୌରବ ଦୁଷ୍ଟ ପାପିଷ୍ଠ ଦୁର୍ଜ୍ଜନ ।
ଚିହ୍ନି ନାହୁଁ କି ପାଞ୍ଚାଳଦେଶ ନୃପବର
ବ୍ରାହ୍ମଣ ଜାତି ଯେହ୍ନଟି ଶ୍ରେଷ୍ଠ କୂଳଧର ।
କୋଟି କୋଟି ଋଷିଘେନି ଯଜ୍ଞ ଆରମ୍ଭିଲେ
ସେ ଯଜ୍ଞ ଅନଳ ଭେଦି ଏ ଜାତ ହୋଇଲେ
ଅଯୋନିସମ୍ଭବା ଯେଣୁ ଅନଳରୁ ଜାତ
ତେଣୁ ଯାଜ୍ଞସେନୀ ନାମ ଦେଲେ ତାଙ୍କ ତାତ ।
ତୁ ଚ୍ଛର ପାପିଷ୍ଠ ହୋଇ ତାଙ୍କ କେଶ ଧରି
ସଭାସ୍ଥଳକୁ ଆଣିଲୁ ଅତି ଗର୍ବ କରି ।
ପୁଣି ସେ ସଭାରେ ତାକୁ କଲୁ ବିବସନ
ମୁଖେ ନ କହିଲୁ କେତେ କୁତ୍ସିତ ବଚନ ।
ପନ୍ଦର ବରଷ ପୁଣି ଛଅମାସ ଅନ୍ତେ
ଏତେକାଳକେ ପଡ଼ିଲୁ ସମୀଶାପ ତୋତେ ।
ଆଜି ଆରେ ଦୁଃଶାସନ ଉପାଡ଼ି ସେ ହାତ
ପାଞ୍ଚାଳୀ ମସ୍ତକେ ଦେବି ନେଇ ତୋ ରକତ
ପୁଣି ନଖରେ ବିଦାରି ତୋର ବକ୍ଷସ୍ଥଳ
ରକ୍ତପାନ କରାଇବି ଦେଖିବେ ସକଳ ।
ଦ୍ରୌପଦୀ ବୋଇଲେ ତୁମ୍ଭେ ଶୁଣ ପ୍ରାଣସଖା
ଅନ୍ତଃପୁର ଗୁପ୍ତସ୍ଥଳେ ଲୁଚିଲି ମୁଁ ଏକା
ଏ ପାପିଷ୍ଠ ଖୋଜି ଖୋଜି ହୋଇଲା ପ୍ରବେଶ
ଘୋଷାଡ଼ି ଆଣିଲା ମୋତେ ଧରି ମୋର କେଶ ।
ଦନ୍ତରେ ତରଣ ଧରି ହୋଇଲି ବିନୟ
ତେବେ ନ ଛାଡ଼ିଲା ମୋତେ ପାପୀ ଦୁରାଶୟ ।
ବିକଳେ ବୋଇଲି ମୋତେ ଛାଡ଼ ବୀରମଣି
ପୁଂସ ନ ଛୁଅନ୍ତି ନାରୀ ହେଲେ ସଧର୍ମିଣୀ ।
ନିର୍ଦ୍ଦୟ ପୁରୁଷ ଏହି ଚଣ୍ଡାଳରୁ ଛାର
ଅନ୍ତଃପୁରେ ପଶି କେଶ ଧଇଲା ମୋହର ।
ଅନ୍ତରୀକ୍ଷେ ଆଣିଲା ସେ ଧରି ମୋତେ ବଳେ
ଆସନ୍ତେ ଚରଣ ମୋର ନ ଲାଗିଲା ତଳେ ।

ଏମନ ବଚନ ଦ୍ରୌପଦୀ ମୁଖୁ ଶୁଣି
ଗର୍ଜିଣ ଉଠିଲ ଭୀମ ମଣ୍ଡ ସିଂହ ଜାଣି ।
ଓଷ୍ଠେ ଦନ୍ତ ଚାପି କୋପେ ପବନ ଆତ୍ମଜ
ଆକର୍ଷି ଧଇଲ ଦୁଃଶାସନ ବାମ ଭୁଜ ।
ପୁଣି ପଞ୍ଜରା ଉପରେ ପ୍ରହାରିଲ ଗୋଡ଼
ଦକ୍ଷିଣ ଭୁଜ ଛିଡ଼ିଲ ହୋଇ ମଡ଼ ମଡ଼ ।
କବା ମହାଦ୍ରୁମମୂଳ କରନ୍ତେ ଛେଦନ
ଶବଦ କରି ଭୂମିରେ ପଡ଼ଇ ଯେସନ ।
ଅଥବା ପର୍ବତଶିଖ ଖଣ୍ଡ ଶୈଳ ଛାଡ଼
ପର୍ବତୁ ଖସିବାକାଳେ ଯେସନେ ଶୁଭେ ରଡ଼ ।
ସେ ପରକାରେ ଶୁଭିଲ ଭୁଜର ଶବଦ
ସେ ଶବଦ ଶୁଣି ସର୍ବେ ହୋଇଲେ ସ୍ତବଦ ।
ସେ ଭୁଜ ଶୋଣିତ ନେଇ ଦ୍ରୌପଦୀ ଶିରରେ
ଢାଳିଲେ ପବନ ପୁଅ ଆନନ୍ଦ ମନରେ ।
ପୁଣି ସେ ଭୁଜକୁ ଧରି ବୁଲାଇ ବୁଲାଇ
ଆକାଶକୁ ଫିଙ୍ଗି ଦେଲେ କଉତୁକୀ ହୋଇ
ସେ ସମସ୍ତେ ଉଡ଼ୁଥିଲ ଶୂନ୍ୟେ ଶ୍ୟେନ ପକ୍ଷୀ
ତାକୁ ଝାମ୍ପି ନେଇଗଲ ହୋଇ ଅତି ସୁଖୀ ।
ଯେଉଁକାଳେ ଶ୍ୟେନପକ୍ଷୀ ଭୁଜ ନେଲ ଧରି
ଆକାଶୁ ରକ୍ତ ପଡ଼ିଲ ବାରିଧାରା ପରି ।
ସେତେବେଳେ କୁଷ୍ମାମୁଣ୍ଡେ ରକତ ପଡ଼ିଲ
କେଶ ଭଜ ନାସା ବାଟେ ତାହା ବହିଗଲ ।
ସେହି ଶୋଣିତକୁ ଦେବୀ କରିଲେ ଲେହନ
ବାମଭୁଜ ଉପାଡ଼ିଲେ ପୁଣି ଭୀମସେନ ।
ବୋଇଲେ ଏହି ଭୁଜରେ ତୁମ୍ଭ ପରି ଭଲ
ସଭାତଳେ ବସାଇଲୁ ଯୁଧିଷ୍ଠିରଙ୍କ ନେଇ ।
ଏହାକହି ଦେବୀ ଶିରେ ଶୋଣିତ ଢାଳିଲେ
ଆନନ୍ଦିତ ହୋଇ ଦେବୀ ତାହା ପାନ କଲେ
ସେ ଭୁଜ ଫିଙ୍ଗିଲେ ପୁଣି ଆକାଶ ମାର୍ଗରେ
ଶ୍ୟେନପକ୍ଷୀ ଉଡୁଥିଲ ନେଇଗଲ ଖରେ ।
ତଥାପି ଭୀମଙ୍କ କୋପ ନ ହୋଇଲ ଶାନ୍ତ
ଦୁଃଶା ବକ୍ଷସ୍ଥଳ ଚିରି ପିଇଲେ ଶୋଣିତ ।
ପ୍ରତିଜ୍ଞା ପୂରଣ କରି ପାଣ୍ଡବବଲ୍ଲଭି
ବହୁତର ଆନନ୍ଦକୁ ହୃଦୟରେ ଲଭି ।
ଯମୁନା ନଦୀକି ଯାଇ ପଖାଳିଲେ କେଶ
ସ୍ନାହାନ ସାରି ପିନ୍ଧିଲେ ସେ ସୂକ୍ଷ୍ମହୀନ ବାସ ।
ଅମରେ ଗଣିକାମାନେ ଦେଲେ ହୁଳହୁଳି
ଅଷ୍ଟସଖୀ ବନାଇଲେ ଦେବୀ ଅର୍ଦ୍ଧ୍ୟଥାଳି ।
ଏହିରୂପେ ନିତ୍ୟକର୍ମ ସବୁ କରି ଶେଷ
ଭାବିନୀଜାଉଣୀ ଗୃହେ ହୋଇଲେ ପ୍ରବେଶ ।
ଏହିଠାରେ ଶେଷ ହେଲା ଦୁଃଶାସନ ବଧ
ଦୋଷ ନ ଧରିବ ମୋର ଆହେ ବନ୍ଧୁବୃନ୍ଦ ।
ଜୟ ହେ କମଳାପତି ଅଗତିତାରଣ
ଶୋକ ତାପ ଧ୍ୱଂସକାରୀ ମାନ ଉଦ୍ଧାରଣ ।
ହେ ପଙ୍କଜମୁଖୀ ମୋରେ ହୁଅ ସୁପ୍ରସନ୍ନ
ଛେଦନ ହେଉ ମୋହର କର୍ମର ବନ୍ଧନ ।
ତୁମ୍ଭ ନାମ ଭଜିବାକୁ ନାହିଁ ଅବସର
ସଦା ବିଷୟ ଚିନ୍ତାରେ ହିନଗଲ ମୋର ।
ସେଥିକି କପିଟରେ ମୁହିଁ ହସାର ବାରିଧି
କେମନ୍ତେ ତରିବି ଆଉ ନ ଦିଶଇ ବୁଦ୍ଧି ।
ହୃଦ ସିଂହାସନ ମୋର ଶୂନ୍ୟ ଅଛି ପଡ଼ି
ଆସ ପ୍ରଭୁ ଦୟାମୟ ବସ ଟିକାମାଡ଼ି ।
ତେବେ ତ ହେ ଜଗଦୀଶ ନ ରହିବ ଭୟ
କିଛି କରି ନ ପାରିବ ସୂର୍ଯ୍ୟଙ୍କ ତନୟ ।
ଯାହା ଇଚ୍ଛା ହୁଏ ହରି ତାହା ଶୀଘ୍ର କର
ଶାରଳା ଦାସର ଭିକ୍ଷା ଏତିକ ମାତର ।

———

## ଦ୍ରୌପଦୀଙ୍କର ପୂର୍ବଜନ୍ମର ବିବରଣ -କୁଳଙ୍କର ଅପମାନ ଓ ଦ୍ରୌପଦୀଙ୍କ ଠାରୁ ଭୀମଙ୍କର ବରଲାଭ

କହିଲେକ ବୈବସ୍ୱତ ମନୁ ମହାତମା
ହେ ଅଗସ୍ତି ମୁନି ତୁମ୍ଭ ଅପାର ମହିମା ।
ଯେଣୁ ବହୁଶାସ୍ତ୍ରେ ତୁମ୍ଭେ ହୋଇଛ ବିଦିତ
ତେଣୁ ଜଗତରେ ତୁମ୍ଭ ନାମ ଅଟେ ଖ୍ୟାତ
ଆହେ ସର୍ବଜ୍ଞ ପଣ୍ଡିତ ଘେନ ନିବେଦନ
ମୋହର ସଂଶୟ ଏକ କରିବ ଛେଦନ ।
ନିଜେ ଏକସ୍ଥାନେ ମୋତେ ଆପଣ କହିଛ
ଲକ୍ଷ୍ମୀରୂପା ଯାଜ୍ଞସେନୀ ଏଥି ନାହିଁ ମିଛ ।
ସେ ପୁଣି ଶୋଣିତ ପାନ କରିଲେ କପରି
ଏଥିରେ ସନ୍ଦେହ ଜାତ ହୋଇଲ ମୋହରି ।
ସେ କଥା ବିସ୍ତରି କହ ମୁନି ମହାଶୟ
ଦ୍ରୌପଦୀଙ୍କ କଥା ଶୁଣି ପାପ ହେଉ କ୍ଷୟ ।

କହିଲେ ଅଗସ୍ତି ମୁନି ଶୁଣ ମହୀପତି
ଦ୍ରୌପଦୀ ବିବାହେ ଏହି କଥା ବ୍ୟାସପତି ।
ଦ୍ରୁପଦ ନରପତିଙ୍କ ଆଗେ କହିଥିଲେ
ଆମ୍ଭେ ତୁମ୍ଭଙ୍କୁ କହିଲୁଁ ତାହା କି ଭୁଲିଲେ ।
ଯେବେ ପଶୁରିଲ ତେବେ ଶୁଣ ଆଉ ଥରେ
ମହାପ୍ରଳୟ ହୋଇଲା ଯେବଣ କାଳରେ ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ସୃଜିଲ ବିଚଳ
ଅଣାକାର ଲୋକ ଯାଏ ସବୁ ହେଲା ଜଳ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
କେହି ନ ରହିଲେ ଭୂମି ଜଳ ଗଲା ପୂରି ।
ବଟାଳଚନ୍ଦ୍ର ନାମରେ ଥିଲା ଏକ ଅହି
ତା କୋଡ଼ରେ ନିଦାବିଷ୍ଣୁ ଶୋଇଲେକ ଯାଇ
ପଦ୍ମାଳୟା ସେ ବିଷ୍ଣୁଙ୍କ ପାଦ ମଖାଳିଲେ
ଧବଳାଙ୍ଗୀ ବୀଣା ବାଇ ସୁସ୍ୱରେ ଗାଇଲେ ।
ସାତଲକ୍ଷ ଅଠାଇଶ ହଜାର ବରଷ
ଏତିକରେ ସତ୍ୟଯୁଗ ହୋଇଲକ ଶେଷ ।
ବାରଲକ୍ଷ ଛୟାଣୋଇସହସ୍ର ତ୍ରେତାଯୁଗ
ଦ୍ୱାପରର କଥା ଶୁଣ କରି ମନଯୋଗ ।
ଆଠଲକ୍ଷ ଚଉଷଠି ହଜାର ଦ୍ୱାପର
କଳି ଚାରିଲକ୍ଷ ବତିଶସହସ୍ର ବତ୍ସର ।
ଏହି ଚାରିଯୁଗରେ ଯେ ହୁଅଇ ଗଣ୍ଡାଏ
ଏକସ୍ତୁରି ଗଣ୍ଡାରେ ଯେ ଏକମନୁ ହୁଏ ।
ଏପରି ଚୌଦ ମନୁରେ କଳ୍ପେକ ଯେ ଜାଣ
ଚଉଦ କଳ୍ପରେ ହୁଏ ଆଡ଼କ ପ୍ରମାଣ ।
ଅଷ୍ଟାଦଶ ଆଡ଼କରେ ହୁଏ ଏକଚନ୍ଦ୍ର
ଷୋଳଚନ୍ଦ୍ରେ ନାଶ ହୁଅନ୍ତି ଦେବତାଦି ଇନ୍ଦ୍ର ।
ଏ ବିଧିରେ ଶତଇନ୍ଦ୍ର ଯେବେ ହେବ କ୍ଷୟେ
ବ୍ରହ୍ମାଙ୍କୁ ଦିବସ ସୃଷ୍ଟି ଆତଯାତ ହୁଏ ।
ଏମନ୍ତ ଦିବସ ଅଷ୍ଟୋତ୍ତର ଶଏ ହେଲେ
ନାଶଯାଏ ବ୍ରହ୍ମା ଶୁଣ ମନୁ ମହୀପାଳେ ।
ନବସୃଷ୍ଟିର ଉଆଣ କରିଥିଲେ ବ୍ରହ୍ମା
ବ୍ରହ୍ମା ମରନ୍ତେ ଜଳର ବଢ଼ିଲାକ ସୀମା ।
ଏହିପରି କେତେଯୁଗ ତହିଁ ଗଲା ବହି
ଦିନେ ବିଷ୍ଣୁ ନିଦ୍ରା ଭଙ୍ଗି ଯାଆନ୍ତେ ଦେଲେ ଚାହିଁ
ଅମୃତ ଦୃଷ୍ଟିରେ ପ୍ରଭୁ କଲେ ନିରୀକ୍ଷଣ
ତହିଁ ପଞ୍ଚଦଶ ବ୍ରହ୍ମା ହୋଇଲେ ଜନମ ।

ଏମାନଙ୍କ ମଧ୍ୟୁ କାର ମସ୍ତକ ପଚଶ
କାହାର ଅଟଇ ବଂଶ କାହାର ପଚିଶ ।
କାର ଷାଠିଏ ସତୁରି ଅଶୀ ନବେ ଶତ
ଏପରି ପନ୍ଦର ବ୍ରହ୍ମା ହୋଇଲେ ସେ ଜାତ ।
ବାଣୀଙ୍କୁ ଦେଖି ସେମାନେ ପାପ ନୟନରେ
ଚାହାନ୍ତେ ଜନ୍ମିଲା କ୍ରୋଧ ତାହାଙ୍କ ହୃଦରେ ।
ସେ ହେତୁରୁ ହେଲା ତାଙ୍କ ରକ୍ତ ରଙ୍ଗବର୍ଣ୍ଣ
ତହିଁରୁ ଏକ କୁମାରୀ ହୋଇଲେ ଜନମ ।
ସେ କନ୍ୟା ସରସ୍ୱତୀଙ୍କୁ ମାଗନ୍ତେ ଆହାର
କିଏ ତୁ ବୋଲିଣ ବାଣୀ ପୁଚ୍ଛିଲେକ ଗିର ।
କି ହେତୁ କେତୁକା ହେଲା ତୋହର ସେ ନାମ
ତାକୁ ସରସ୍ୱତୀ ଚାହିଁ ବୋଇଲେ ଏସନ ।
ଏହି ଯେ ବସିଅଛନ୍ତି ପଞ୍ଚଦଶ ନର
ତୁ ଯାଇ ଏହାଙ୍କୁ ବେଗେ କର ଗୋ ଆହାର
ସରସ୍ୱତୀଙ୍କର ଆଜ୍ଞା ପାଇଣ କେତୁକା
ଯାଆନ୍ତେ ବ୍ରହ୍ମାଙ୍କୁ ଦେଖି ହୋଇଲେ ତାଟକା
ପ୍ରଥମଯାକରେ ପୂର୍ଣ୍ଣ ହୋଇଥିଲା ପାଣି
ବ୍ରହ୍ମା ଆଉ କେତୁକାକୁ ହେଲା ଆଣ୍ଟୁ ଆଣି ।
ହଜାର ବରଷେ ଏକ ବ୍ରହ୍ମାଙ୍କୁ ମାଇଲା
ତାହାଙ୍କୁ ଭକ୍ଷଣ କରି ଅନ୍ୟ ପାଶେ ଗଲା ।
ଏପରି ଚୌଦହଜାର ସମ୍ବତ୍ସରେ ସେହି
ଚଉଦ ବ୍ରହ୍ମା ରୁଧିର ପିଇଲେକ ଯାଇ ।
ଶୁକ୍ରେକ ନାମକ ବ୍ରହ୍ମା ବାକୀ ରହିଥିଲା
କେତୁକା ଯାଆନ୍ତେ ସେହି ପଳାଇଣ ଗଲା ।
ବିଷ୍ଣୁଙ୍କ ପାଶରେ ଯାଇ ହେଲା ଉପସ୍ଥିତ
ବୋଇଲାକ ରକ୍ଷା କର ଆହେ ଜଗନ୍ନାଥ ।
ଶବଦ ବିକଳେ ବ୍ରହ୍ମା ଡାକିଲାକ ଯହୁଁ
ହରିଙ୍କର ଯୋଗନିଦ୍ରା ଭାଜିଗଲା ତହୁଁ ।
ନୟନ ଫେଡ଼ି ଦେଖିଲେ ବ୍ରହ୍ମା ଡାକୁଅଛି
ତା ପାଶେ କେତୁକା ଖଣ୍ଡା ଧରିଣ ରହିଛି ।
ଦେଖି ରହ ରହ ବୋଲି ବୋଇଲେ ମାଧବ
କେଉଁ ଦୋଷେ ଦୋଷୀ ଥାକୁ କପାଇଁ ମାରିବ
କେତୁକା କହିଲା ଆଜ୍ଞା ଦେଇଛନ୍ତି ବାଣୀ
ରକତ ପାନ କରିବି ଏ ବ୍ରହ୍ମାଙ୍କୁ ହାଣି ।
ବିଷ୍ଣୁ ବୋଇଲେ ଆମର ବ୍ରହ୍ମା କାହିଁଗଲେ
ବାଣୀ ବୋଇଲେ କେତୁକା ହାତେ ସର୍ବେ ମଲେ

ବ୍ରହ୍ମାଏ ପାପନେତ୍ରରେ ମୋତେ ଚାହିଁବାରୁ
ଏ କେତୁକା ଜନ୍ମ ହେଲା ମୋ କ୍ରୋଧନେତ୍ରରୁ
ବିଷ୍ଣୁ ବୋଇଲେ ଏ ବ୍ରହ୍ମା ଶରଣ ପଶିଲା
ଏ ହେତୁ ଏହାକୁ ଆଉ ନ ମାର ବୋଇଲା ।
ଦ୍ୱାପରଯୁଗେ ଭକ୍ଷିବୁ ଏହାର ରୁଧିର
ବାଣୀ କହିଲେ କାରଣ କହ ହେ ଏହାର ।
ବିଷ୍ଣୁ ବୋଇଲେକ ଏବେ ହେବ ସତ୍ୟଯୁଗ
ତହିଁରେ ତ୍ରେତୟାଯୁଗ ପୁଣି ହେବ ଭୋଗ ।
ତ୍ରେତୟା ଅନ୍ତେ ଦ୍ୱାପରଯୁଗ ଯହୁଁ ହେବ
ଏହି ବ୍ରହ୍ମା ଦୁଃଶାସନ ହୋଇଣ ଜନ୍ମିବ ।
ଏ କେତୁକା ହୋଇବ ଯେ ଦ୍ରୁପଦ କୁମାରୀ
ଯଜ୍ଞକୁଣ୍ଡୁ ଜାତ ହେବ ଅନଳ ବିଦାରି ।
କାଳେ ଏହି ଦୁଃଶାସନ ଦ୍ରୌପଦୀ କେଶକୁ
ଧରି ଘୋଷାରିଣ ନେବ କୁରୁଙ୍କ ସଭାକୁ ।
ଦ୍ରୌପଦୀଙ୍କର ବଲ୍ଲଭ ହୋଇଣ ଯେ ଭୀମ
ଭୀମ ଦୁଃଶାସନର ଯେ ହୋଇବ ସଂଗ୍ରାମ ।
ଦୁଃଶା ଭୀମହସ୍ତେ ଯିବ ସଂଯମନୀ ପୁର
ସେହିକାଳେ କେତୁକା ଗୋ ଏ ଦୁଃଶାସନର ।
ରକତ ପାନ କରିଣ ହୋଇବୁ ତୃପତ
ଆମ୍ଭ ବୋଲେ ଯାଙ୍କୁ ଛୁଡ଼ିଯାଅ ତୁ ଏ ଘାନ୍ତ ।
ଏହା ଶୁଣି ସେ କେତୁକା ତହୁଁ ଚଳିଗଲା
ଶୁଦ୍ରେକ ବ୍ରହ୍ମାର ଆଉ ଜୀବନ ନ ନେଲା ।
ସେହି ବ୍ରହ୍ମା ଏବେ ହେଲା ଧୃତରାଷ୍ଟ୍ର ସୁତ
ପୁଣି ଦୁଃଶାସନ ନାମ ହୋଇଲା ପ୍ରାପତ
ଏ ବ୍ରହ୍ମା ଶୋଣିତ ପାନ କରିବାର ପାଇଁ
ପାଣ୍ଡବଙ୍କର ଘରଣୀ ହୋଇଲେକ ସେହି ।
ଏବେ ସନ୍ଦେହ ଛେଦନ ହେଲା କି ରାଜନ
ଦ୍ରୌପଦୀଙ୍କ ପୂର୍ବକଥା କଲି ମୁହିଁ ଗାନ ।
ଏଥୁଅନ୍ତେ କହୁଅଛି ଶୁଣ ଅନ୍ୟ କଥା
ଦୁଃଶାସନ ବଧ ଅନ୍ତେ ହେଲା ଯେ ବାରତା ।
ଶଲ୍ୟ ବୋଇଲେ ଶୁଣ ହେ ଆଦିତ୍ୟ ତନୟ
ଭୀଷ୍ମ ପ୍ରତିଜ୍ଞାର ଦେଲ କସ ପରିଚୟ ।
ଯେଉଁକାଳୁଁ ଭୀଷ୍ମ ଦ୍ରୋଣ ହେଲେଣି ନିହତ
ସେକାଳୁଁ ରଣ କରିବା ନ ଥିଲା ଉଚିତ ।
ମୋହର କଥାକୁ ଆଗୋ ଅବହେଳା କରି
ସେନାପତି ହେଲ ତୁମ୍ଭେ ମନେ ଗର୍ବ ଧରି ।

ତୁମ୍ଭ ସେନାପତି ହେବା ପ୍ରଥମ ଦିନରେ
ରାଜା ସତାଶୋଇ ଭାଇ ଗଲେ ଯମପୁରେ ।
ପୁଣି ଦ୍ୱିତୀୟ ଦିନରେ ମଲେ ଦୁଃଶାସନ
ରାଜା ଅରକ୍ଷ ହୋଇଲେ କି ବିଚାର ମନ ।
ଏବେ ଆଉ ଜୟକଥା ପରିତ୍ୟାଗ କରି
ଚାଳିଦେ କରିବ ସନ୍ଧି ରାଜାକୁ ପଚାରି ।
କର୍ଣ୍ଣ ବୋଇଲେ ମାମୁ ହେ ଜାଣ ନାହିଁ ମିତି
ପାଣ୍ଡବ ସଙ୍ଗେ ରାଜାଙ୍କ କାହୁଁ ହେବ ପ୍ରୀତି ।
କରିବି ସମର ନିଶ୍ଚେ ମାରିବି ଅର୍ଜୁନ
ନିସତ ନ ହୁଅ ମାମୁଁ ଦୃଢ଼ କର ମନ ।
ଏହି ପରକାରେ କହି କର୍ଣ୍ଣ ସେନାପତି
ରଥ ଚାଳିବା ନିମନ୍ତେ ଦେଲେ ଅନୁମତି ।
ପୁଣି ଶଲ୍ୟବୀର ରଥ ତୁରଙ୍ଗ ଚାଳିଲେ
ନନ୍ଦିଘୋଷ ରଥ ଆଗେ କର୍ଣ୍ଣ ରଥ କଲେ ।
କର୍ଣ୍ଣଙ୍କ ରଥ ସମ୍ମୁଖେ ଦେଖି ଧନଞ୍ଜୟ
ସମର କରିଲେ କ୍ରୋଧ ହୋଇ ଅତିଶୟ ।
ବେଳୁବେଳ ରଣ ହେଲା ଦୁଃସହ ପ୍ରକାରେ
ଛାୟାପତି ବୁଡ଼ିଗଲେ ବାରୁଣୀ କୁଣ୍ଡରେ ।
ମହାଘୋର ରଣ ହେଲା ଅନ୍ଧକାର ରାତି
ବଢ଼ିଲାକ ରଣରଙ୍ଗ ନୋହିଲାକ ଶାନ୍ତ ।
ଶକୁନି ଧୃଷ୍ଟଦ୍ୟୁମ୍ନ କଲେ ରଣରୋଳ
ବୃଷସେନ ରାଜା ସଙ୍ଗେ ଯୁଝିଲେ ନକୁଳ ।
କୁନ୍ତ ଧରିଣ ନକୁଳ ମାରନ୍ତେ ତୁଣ୍ଡରେ
ବୃଷସେନ ବକ୍ଷ ଫୁଟି ପିଠିକି ବାହାରେ ।
ବୃଷସେନ ରାଜା ଯହୁଁ ହୋଇଲେ ନିହତ
ସୈନ୍ୟମାନେ ପଳାଇଲେ ହୋଇ ଇତସ୍ତତଃ ।
ସହସ୍ରେ ଯୋଦ୍ଧା ମାଇଲେ ନକୁଳ କୁନ୍ତରେ
କର୍ଣ୍ଣ ପ୍ରବେଶ ହୋଇଲେ ଏମନ୍ତ ବେଳରେ ।
ପ୍ରବେଶ ମାତ୍ରେ ବାବଲ ଶର କଲେ ଘାତ
ନକୁଳଙ୍କ ଅଶ୍ୱ ରଥ ହେଲା ଚୂର୍ଣ୍ଣଭୂତ ।
ବିରଥୀ ହୋଇ ନକୁଳ କରି ପାଦଗତି
କୁନ୍ତ ପ୍ରହାର କରିଲେ କର୍ଣ୍ଣଙ୍କର ପ୍ରତି ।
ତାହା ଦେଖି କର୍ଣ୍ଣବୀର ଡେଇଁଲେ ରଥରୁ
କୁନ୍ତକୁ ଛଡ଼ାଇ ନେଲେ ନକୁଳ ହସ୍ତରୁ ।
ତାକୁ ଦୁଇଖଣ୍ଡ କରି ଭାଙ୍ଗି ପକାଇଲେ
ଖଣ୍ଡା ଧରି ନକୁଳଙ୍କ ଚୁଟିକି ଧଇଲେ ।

ଶୂନ୍ୟହସ୍ତ ହୋଇଥିଲେ ଯେକାଳେ ନକୁଳ
କର୍ଣ୍ଣଙ୍କ ସମ୍ମୁଖରେ ଆଉ କି କରିବେ ବଳ ।
ଚୁଟି ଧରି ଚକ୍ରାକାରେ ବୁଲାଇ ବୁଲାଇ
ପୁଣି ଖଡ଼ଗ ନକୁଳ କାନ୍ଧରେ ବସାଇ ।
ବୋଇଲେ ଆରେ ପାଣ୍ଡବା ପକାଇବି ହାଣି
ତୋ ଇଷ୍ଟଦେବତା ଚିନ୍ତ ମୃତ୍ୟୁକାଳ ଜାଣି ।
ନକୁଳ ବୋଇଲେ ଅନ୍ୟ ଇଷ୍ଟ ନାହିଁ ଜାଣ
କୋଇନ୍ତା ମାତା ରଖିବେ ପାଦରେ ଶରଣ ।
କୋଇନ୍ତାଙ୍କ ନାମ ଶୁଣି କର୍ଣ୍ଣ ମହାଭାଗ
ପୂର୍ବକଥା ମନେ ଗୁଣି କଲେ ପରିତ୍ୟାଗ ।
ବୋଇଲେ ଶୁଣ ରେ ତୁହି ନକୁଳ ମୋ ଗିର
ପ୍ରାଣଦାନ ଦେଲି ପଳା ତେଜିଣ ସମର ।
ତୋ ସମାନ ଯେହୁ କରି ତା ସଙ୍ଗରେ ରଣ
ଆଉ ମୋ ହାତେ ପଡ଼ିଲେ ନେବି ତୋ ପରାଣ
ଏମନ୍ତ ବହୁତ ଗାଳିଦେଇ ଦେଲେ ଛାଡ଼ି
ନକୁଳ ଲଜ୍ଜିତ ହୋଇ ଗଲେ ଯେ ବାହୁଡ଼ି ।
ଯେଉଁଠାରେ ରହିଥିଲେ କୃଷ୍ଣ ଅରଜୁନ
ତାଙ୍କ ପାଶରେ ରହିଲେ ହୋଇଣ ବିମନ ।
ଅର୍ଜ୍ଜୁନ ସମସ୍ତ ଶୁଣି କହିଲେ ବୁଝାଇ
ପ୍ରଥମରେ ଭୀମଙ୍କୁ ସେ ଅଛି ଲଜ୍ଜା ଦେଇ ।
ଦ୍ୱିତୀୟେ ଯୁଧିଷ୍ଠିରଙ୍କୁ ଦେଲା ଅପମାନ
ଏବେ ତୁହି ଲଜ୍ଜାପାଇ ହେଉଛୁ ବିମନ ।
ହାରିବା ଜିଣିବା ଅଟେ ଷତ୍ରିଙ୍କର ରୀତ
ଏଥିକି ଭାବନା କପାଁ ମନ କର ଶାନ୍ତ ।
ତୋର ସଙ୍ଗେ ଆମ୍ଭେମାନେ ନୋହୁକି ଲଜ୍ଜିତ
ଆଚ୍ଛା କର୍ଣ୍ଣକୁ ଦେଖିବା ସେ ବୀର କେମନ୍ତ ।
ଏମନ୍ତ କହି ଅର୍ଜ୍ଜୁନ ନକୁଳେ ବୋଧିଲେ
ସେ ରାତ୍ରେ ବହୁତ ସୈନ୍ୟ ପାର୍ଥ ନାଶକଲେ
ସମର କରନ୍ତେ ହେଲା ବହୁତ ରଜନୀ
କାଳର ଶୀତରେ ବ୍ୟସ୍ତ ସକଳ ସଇନ ।
ହସ୍ତେ ଅସ୍ତ୍ରମାନ ଆଉ ନ ପାରିଲେ ଧରି
ଯୁଦ୍ଧେ ଅଶକତ ଅଙ୍ଗ ହୋଇଲା ସବୁରି ।
ସୈନ୍ୟଙ୍କ ଅବସ୍ଥା ଦେଖି ଦେବ ଜଗନ୍ନାଥ
ପାର୍ଥକୁ ବୋଇଲେ ରଣ କରାଅ ଛଗିତ ।
ଅସ୍ତ୍ର ଛାଡ଼ି ପାର୍ଥକଲେ ଜୟଶଙ୍ଖ ନାଦ
ଉଭୟେ ସୈନ୍ୟ ରହିଲେ ଶୁଣି ସେ ଶବଦ ।

ତହୁଁ କୃଷ୍ଣ ପାଣ୍ଡବାଦି ସୈନ୍ୟସହ ଖଲେ
ବାରୁଣାବନ୍ତ କଟକେ ପ୍ରବେଶ ହୋଇଲେ ।
ଯେ ଯାହାର ନିତ୍ୟକର୍ମ ସାରି ଶୀଘ୍ରଗତି
ଶୟନ ମନ୍ଦିରକୁ ଯେ ସମସ୍ତେ ଚଳନ୍ତି ।
ଏ ବେଳେ କୃଷ୍ଣା ଦାସୀକୁ କରିଲେ ଆଦେଶ
ଏହିକ୍ଷଣି କହି ଯାଅ ଭୀମଙ୍କର ପାଶ ।
ତାହାଙ୍କୁ ଡକାଇ ଆଣ ଶୀଘ୍ର ମୋର କନ୍ତ
ଆଜ୍ଞାପାଇଁ ମୃଦୁସ୍ମିତା ଗଲା ଶୀଘ୍ର ଗତ ।
ଭୀମସେନକୁ ବୋଇଲା ଦ୍ରୌପଦୀ ଡକରା
ବିଳମ୍ବ ନ କରି ତୁମ୍ଭେ ଆସ ହୋଇ ତ୍ୱରା ।
ଶୁଣି ବୃକୋଦର ମନେ ହୋଇଲେ ଆନନ୍ଦ
ଭୀମସେନକୁ ଏକାନ୍ତେ ବୋଇଲେ ଗୋବିନ୍ଦ ।
ସକଳ ପ୍ରକାରେ ନେବ ଦ୍ରୌପଦୀଙ୍କ ମନ
ତହୁଁ ସେ ସନ୍ତୁଷ୍ଟ ହୋଇ ହୋଇଲେ ପ୍ରସନ୍ନ ।
ବରମାଗ ବୋଲିଣ ସେ କହିବେ ଯେକାଳେ
ପଲ୍ଲଙ୍କକୁ ତ୍ୟାଗକରି ଉଭାହେବ ତଳେ ।
ଶୁଣିଣ କହନ୍ତି ଭୀମ ଯୋଡ଼ି ବେନି କର
ଏପରି କପାଁ କହିଲ ଆହେ ଚକ୍ରଧର ।
ସେ ତ ମୋହର ଭାରିଯା ପୁଣ ପ୍ରିୟବନ୍ଧା
ତାହା ସଙ୍ଗେ ଅଛି ମୋର ଅଭେଦ୍ୟପୀରତି ।
କେବଣ ଗୁପତ କଥା କହିବ ବା ମୋତେ
ଏଥିକି କରଯୋଡ଼ିବି କହ କି ନିମନ୍ତେ ।
ସ୍ତ୍ରୀମାନଙ୍କ ଯେବେ ମୋର ବୋଲ ନ କରିବ
ତାହାର ମୋହର ଆଉଁ ପୀରତି ନୋହିବ ।
ଶୁଣିକରି ଜଗନ୍ନାଥ ଦେଲେ ଏହି ବୁଦ୍ଧି
ତାଙ୍କ ସଙ୍ଗ ନ ଜଣାଇ ବୋଲିବ ଯେ ବୋଧି
ଅବୋଧ ସ୍ତ୍ରିରି ମାନଙ୍କ ନ ଜାଣ ହେ ଭୀମ
କଦାଚିତେ ତାହାଠାରେ ନ କରିବ ତମ ।
ଅତି ପ୍ରୀତିବଳେ ଯେବେ ଯାଚିବେ ସେ ବର
ଆମ୍ଭର କଥାକୁ ମନେ ରଖି ବୃକୋଦର ।
ବୋଲିବ ପାଣ୍ଡବେ କୃଷ୍ଣ ତୁମ୍ଭର ଦାଡ଼ରେ
ନ ପଡ଼ିବେ ଏହି ବର ଦିଅ ସନ୍ତୁଷ୍ଟରେ ।
ଏହା ଶୁଣି ଭୀମଙ୍କର ନ ସ୍ଫୁରିଲା ବାଣୀ
ଛୁ ନ କହି କୃଷ୍ଣଙ୍କୁ ଗଲେ ସେହିକ୍ଷଣି ।
ଭୀମକୁ ଦେଖିଣ କୃଷ୍ଣା ହୋଇ ହସ ହସ
ବୋଇଲେ ହେ ପ୍ରାଣନାଥ ମୋ ପାଶକୁ ଆସ ।

ଏହା କହି ବାହୁଯୁଗେ କରି ଆଲିଙ୍ଗନ
ଚନ୍ଦ୍ରଶାଳାପୁରେ ଦୁହେଁ କରିଲେ ଗମନ ।
ନାନାହାସ ପରିହାସେ ମନମୁଗ୍ଧ କରି
ସନ୍ତୁଷ୍ଟଚିତ୍ତ ହୋଇଲେ ଦ୍ରୁପଦ କୁମାରୀ ।
ବୋଇଲେକ ବରମାଗ ଆହେ ପ୍ରାଣନାଥ
ଯାହା ମାଗିବ ତା ଦେବି ମୋର ସତ୍ୟ ସତ୍ୟ
ତାହା ଶୁଣି ଭୀମସେନ ପତ୍ନୀଙ୍କ ଚେତିଲେ
ଚଳେ ଉଭାହୋଇ ଗୃଷ୍ଟୁ ବଚନ କହିଲେ ।
ଆଗୋ ଦେବୀ ତୋଇଚ୍ଛାରେ ଯେବେ ବରଦେବୁ
କୃଷ୍ଣସଙ୍ଗ ଆମ୍ଭେ ତୋର ବାଡ଼େ ନ ପଡ଼ିବୁ ।
ଭୀମଙ୍କ ପ୍ରାର୍ଥନା ଶୁଣି ନାରୀ ଶିରୋମଣି
ବୋଇଲେ ଏ ବୁଦ୍ଧି ଶିକ୍ଷା ଦେଲେ ଚକ୍ରପାଣି ।
ଆହେ ପ୍ରାଣନାଥ ଆଜ ଯଥାର୍ଥ କହିବ
ତୁମ୍ଭ ଆଦିକରି କୃଷ୍ଣ ବଂଶକୁ ମାରିବ ।
ଏହି ଧର୍ମ ଯୁଧିଷ୍ଠିର ନାହାନ୍ତି ମୋ ଦାଚେ
ସ୍ୱଶରୀରେ ସ୍ୱର୍ଗ ଯିବେ ଜାଣ ଏହା ଦୃଢ଼େ ।
ତୁମ୍ଭେମାନେ ମୋହର ଯେ ପ୍ରାଣସମ ଅଛ
ତୁମ୍ଭଙ୍କୁ ସଙ୍ଗରେ ଘେନି ଯିବି ମୁଁ ବୈକୁଣ୍ଠ
ତାହା ଶୁଣି ଭୀମସେନ ହୋଇଲେ ଶଙ୍କିତ
ହୃଦୟରେ ଚିନ୍ତା କଲେ ଦେବ ଜଗନ୍ନାଥ ।
ଭୀମସେନ ବିଚାରିଲେ କିଛି ତ ନୋହିଲା
ଜଗନ୍ନାଥଙ୍କ ବଚନ ଅନ୍ୟଥା ହୋଇଲା ।
ପୁଣିହିଁ ଭୀମ କହନ୍ତି ଶୁଣ ଗୋ ସୁନ୍ଦରୀ
ମୁଁ ତୋହର ସ୍ୱାମି ତୁହି ମୋର ମନୋହାରୀ ।
କିବା କଥା ତୋତେ ଏତେ ପ୍ରକାରେ କହିଲି
କହିଲୁ ତ ଯା ମାଗିବ ତାହା ଦେବି ବୋଲି
ମୋତେ ଗୋ ସୁନ୍ଦରୀ ଛାଡ଼ି ଯୁଧିଷ୍ଠିଙ୍କ ସଙ୍ଗେ
ଶ୍ରୀକୃଷ୍ଣଙ୍କୁ ଛାଡ଼ିଦିଅ କଉତୁକ ରଙ୍ଗେ ।
ନ କଲେ ମୋ ମନଦୁଃଖ ହେବ ଗୋ ସୁମୁହିଁ
ତୋହର ଦୁଇଚରଣ ଭଜ ମୁଁ ଧରଇ ।
ଏହା ଶୁଣି ଦ୍ରୁପଦୀ ହେଲେ ସଙ୍କୁଚିତା
ବୋଇଲେ ହେ ପ୍ରାଣନାଥ ଶୁଣ ପୂର୍ବକଥା ।
ମନ୍ୱନ୍ତରେ କହିଛନ୍ତି ଯାହା ଚକ୍ରପାଣି
ଏବେ ସେ ସକଳ କଥା ପାସୋରି ଦେଲେଣି
ମୋତେ ବୋଇଲ ଛାଡ଼ିଣ ଦେବାକୁ ତାହାକୁ
ସେ ଗଲେ ମୁଁ ନ ପାରିବି ଯାଇ ସେ ସ୍ୱର୍ଗକୁ ।

ଶୁଣି ଭୀମଙ୍କର ହେଲା ମନରେ ବିଷାଦ
ରାତ୍ରିଯାକ ତାଙ୍କୁ ଆଉ ନୋହିଲାକ ନିଦ ।
ପ୍ରଭାତ ହୁଅନ୍ତେ ଭୀମ ନିତ୍ୟକର୍ମ ସାରି
ସଂଗ୍ରାମକୁ ବାହାରିଲେ କରେ ଶସ୍ତ୍ରଧରି ।
ଭୀମଙ୍କୁ ଡାକି ପୁଚ୍ଛିଲେ ଦେବ ଜଗନ୍ନାଥ
କାଲି ଯାହା କହିଥିଲୁଁ ସେ ହେଲା କେମନ୍ତ ।
ଶୁଣି ଭୀମ ନତଶିରେ ତାହାଙ୍କୁ କହିଲେ
ଯେତେରୂପେ କହିଲେ ସେକଥା ନ ଘେନିଲେ
ବୋଇଲା ଏକା ଯୁଧିଷ୍ଠି ଦେବଙ୍କୁ ଛାଡ଼ିବ
ତୁମ୍ଭଙ୍କୁ ଛାଡ଼ିଲେ ଏଥୁଁ ମୁଁ କପରି ଯିବ ।
ଆହେ ପ୍ରଭୁ ତୁମ୍ଭପାଇଁ କହିଲି ବହୁତ
ତେବେ ସେ ବୋଧ ନୋହିଲା କର ଯା ଉଚିତ
ଭୀମର ମୁଖରୁ ଶୁଣି ଜଗତର ବନ୍ଧୁ
କପାଳୁ କର୍ଣ୍ଣି ଆସିଲା ସ୍ୱେଦ ବିନ୍ଦୁ ବିନ୍ଦୁ ।
ବିଶେଷ ଦୁଃଖିତ ହୋଇ କହିଲେକ ଏହା
ପୂର୍ବେ ଯାହା ଅର୍ଜିଅଛୁ ଭୁଞ୍ଜିବ ନା ତାହା ।
ଦୁଃସହ ବିପଦେ ପଡ଼ିଲି ମୁହିଁ ଅକାରଣ
ଏହା କହି ସନ୍ତାପିତ ହୋଇଲେ ଆପଣ ।
ଆହେ ମନୁରାଜା ଶୁଣ ତେଣେ ଦୁର୍ଯ୍ୟୋଧନ
କପାଳରେ କର ମାରି କରଇ ରୋଦନ ।
ଆରେ ରେ ଦଇବ ତୋର ଏହା ଥିଲା ମନେ
ନିରକ୍ଷ କରିଲୁ ମୋତେ ଭାଇଙ୍କ ବିହୀନେ ।
ଆରେ ଦୁଃଶାସନ ମୁହିଁ ତୋହର ପ୍ରସାଦେ
ନିଷ୍କଣ୍ଟକ ରାଜ୍ୟକଲି ଅତି ଅପ୍ରମାଦେ ।
ବିପୁଳ ଭୋଗ ଭୁଞ୍ଜିଲି ତୋହପାଇଁ ମୁହିଁ
ଏବେ ତୋ ବିହୀନେ ମୋତେ ବୁଦ୍ଧି ଦିଶୁନାହିଁ
ତୋର ସମାନ ମୋହର ଆଉ କେ ହୋଇବ
ତୋର ବିନା ମୋର ପ୍ରାଣ କପରି ରହିବ ।
ଜାଣିଲି ପାଣ୍ଡବମାନେ ଅତି ବଳୀୟାର
ଭୀମ ମାଇଲା ସକଳ ଭାଇଙ୍କି ମୋହର ।
ଏହା ସଙ୍ଗେ ଲଢ଼ିବାକୁ ବାର ବାର ତୋତେ
ମନା କରିଥିଲି ଭାଇ ଗଲୁ କି ନିମନ୍ତେ ।
ମୋର କର୍ମ ଅବଳକୁ ହୋଇଲା ଏପରି
ଭୀଷ୍ମ ଦ୍ରୋଣ ପ୍ରାୟ ରଥୀ ଗଲେ ଯମପୁରୀ ।
ତୋହର ବାହୁକୁ ଥିଲା ମୋର ବଡ଼ ଆଶ
ତୋ ବିନା ଅନ୍ଧାର ଦିଶେ ମୋତେ ଦଶଦିଶ ।

ତୁମ୍ଭେ ତ ଯୁଦ୍ଧ କରଣେ ପରାଣ ଠେକିଲୁ
ବିପଦ ସମୁଦ୍ରେ ମୋତେ ବୁଡ଼ାଇଣ ଗଲୁ ।
ମୋହର ଦକ୍ଷିଣ ବାହୁ ତୁମ୍ଭେ ଥିଲୁ ଭାଇ
ତୋ ବାହୁ ଯା ଛୁଡ଼ାଇଲା ସେ କଥା ନୁହଇ
ମୋହର ବାହୁ ଛୁଡ଼ିଲା କରିବି ମୁଁ କିସ
ତୋ ଯୋଗେ ଅନ୍ଧାର ଦିଶେ ଉଡ଼ଇ ସାହସ
ହେ ମିତ୍ର କିସ କରିବି ଏଥୁ ଯାଇକରି
ଆଉ ମୋର କେହି ନାହିଁ ସବୁ ଗଲେ ମରି
ଏହା କହି ସଙ୍ଗ ସୈନ୍ୟ ରଖି ରଣଭୂଇଁ
ହସ୍ତିନାକୁ ଏକା ଗଲେ କୁରୁକୁଳସାଇଁ ।
ଜୟ ଜୟ ଜଗବନ୍ଧୁ ହେ ଯଦୁନନ୍ଦନ
ବ୍ରଜକାମିନୀଙ୍କ ଅଟ ହୃଦୟ ଚନ୍ଦନ ।
ବଡ଼ଦେଉଳବିହାରୀ ବଡ଼ ଶଟା ଚୂଳ
କି ଶୋଭା ପାଉଛି ଚକାନୟନ ଯୁଗଳ ।
ବଳୟାର ଭୁଜ ଦେଖି ଭୁଲିଯାଏ ମନ
ଧନ୍ୟ ଧନ୍ୟ ସେ ମୂରତି ମଦନମୋହନ ।
କେତେ ଶୋଭାବନ ଦିଶେ ସେ ରଙ୍ଗ ଅଧର
ପୂରି ରହିଛି ତହିଁରେ ହାସ୍ୟ ମନୋହର ।
ନାସାରେ ଗଜ ମୁକୁତା ଦିଶେ ଶୋଭାବନ
କଟି ପାଟଝୁମ୍ପା ଦେଖି ଲାଖିରହେ ମନ ।
ରେଖି କୁନ୍ଦନର ଶୋଭା ମନ ନିଏ କିଣି
ଏମନ୍ତ ରୂପରେ ସଦା କରେ ମୁଁ ଭାଳେଣି ।
ଆହେ ଚକାଡୋଳା ମୋତେ ନ କର ନିରାଶ
ସଂସାର ଜାଲରେ ପଡ଼ି ହେଲିଣି ହତାଶ ।
ବାହୁ ଟେକିଦେଇ ଭୁଜେ ରଖ ଏ ଭୃତ୍ୟକୁ
ଶାରଳାଦାସ ନ ଜାଣେ ଅନ୍ୟ ସେ କାହାକୁ ।

---

## ଶ୍ୟେନପକ୍ଷୀର ପୂର୍ବଜନ୍ମ ବିବରଣ ଓ ଭୀମ ଦୁଃଶାସନର ପୂର୍ବ ବିବରଣ

ପଚ୍ଚରନ୍ତି ବୈବସ୍ୱତ ମନୁ ମହାମତି
ଶୁଣ ହେ ଅଗସ୍ତି ମୁନି ମୋହର ଭାରତୀ ।
ଉପାଡ଼ିଲା ଦୁଃଶାସନ ଭୁଜ ଭୀମସେନ
କହିଲି ଯେ ସେହି ଭୁଜ ଗିରିର ସମାନ ।
ବୁଲାଇଣ ଭୀମସେନ ଫିଙ୍ଗିଦେଲା ବେଗେ
ଶ୍ୟେନପକ୍ଷୀ ଝାମ୍ପିନେଲା ଆହାର ସଂଯୋଗେ
ସେ ଶ୍ୟେନ ପକ୍ଷୀ ପୂର୍ବରେ କିଏ ଥିଲା କହ
ଏଥିର ଚରିତ ମୋତେ ଲାଗୁଛି ସନ୍ଦେହ ।
କହନ୍ତି ଅଗସ୍ତି ଶୁଣ ରାଜା ସ୍ଥିର ମନେ
ଶ୍ୟେନପକ୍ଷୀ ବୁଲେ ନିତ୍ୟ ସମର ଗଗନେ ।
ଦୁଃଶାର ଦକ୍ଷିଣଭୁଜ ଧଇଲା ଅଧରେ
ବାମ ଭୁଜକୁ ଫିଙ୍ଗନ୍ତେ ଝାମ୍ପିଲା ପାଦରେ ।
ପାଦେ ଥଣ୍ଟେ ଧରି ଭୁଜ ହୋଇ ତୋଷମନ
ଉଡ଼ି ଉଡ଼ି ଚାଲିଗଲା ଚୌରାଶୀ ଯୋଜନ ।
ଲୋକାଲୋକ ନାମେ ଅଛି ଏକଇ ଭୂଧର
ତାହାର ଶିଖେ ବସିଲା ଯାଇ ପକ୍ଷୀବର ।
ସେ ଭୂଧର ପକ୍ଷୀବର ନ ପାରନ୍ତେ ସହି
ସାତକ୍ରୋଶ ଛଡ଼ା ଥିଲା ବନ୍ଧ୍ୟଗିରି ରହି ।
ଦୁଇ ପର୍ବତରେ ଦୁଇ ପାଦ ଦେଇ ବସି
ସେ ବେନିଭୁଜ ଖାଇଲା ମନେ ହୋଇ ଖୁସି ।
ବିସ୍ମର ରାଜନ ପକ୍ଷୀ ସମାନ୍ୟ ନୁହଇ
ତିନିଯୋଜନ ତାହାର ପଞ୍ଜରା ଅଟଇ ।
ପଞ୍ଚାଶ ଯୋଜନ ଅଟେ ଡେଣାର ପ୍ରମାଣ
ପଞ୍ଚାଶ କ୍ରୋଶ ଓସାର ଶିର ତାର ଜାଣ ।
ଚିତ୍ରଭାନୁସେନ ନାମରେ କାଶ୍ମୀର ନରେଶ
ପାରିଧି କରିବା ପାଇଁ କରି ଅଭିଳାଷ ।
ସାତକ୍ଷୌଣୀ ସୈନ୍ୟ ସାତ ସହସ୍ରକ ଗଜ
ଦେନିଣ ବାହାର ହେଲେ ରାଜା ହୋଇ ସଜ ।
ସେ ଗଜମାନେ ପକ୍ଷୀର ପାଦେ ଗଲେ ଗଳି
ଜାଣି ନ ପାରିଲା ତାହା ପକ୍ଷୀ ମହାବଳୀ ।
ଶ୍ୟେନ ପକ୍ଷୀର ଅଟଇ ଏମନ୍ତ ଶରୀର
ଏବେ କହୁଅଛୁ ଶୁଣ ଜନମ ତାହାର ।
ଏହି ଶ୍ୟେନବଂଶେ ଥିଲେ ବୁଧ ନରପତି
ତାଙ୍କ ପୁତ୍ର ପୁରୁରବା ହେଲେ ଉତପତ୍ତି ।
ପୁରୁରବାଙ୍କ ନନ୍ଦନ ନୃପଦେବା ହେଲେ
ନୃପଦେବାଙ୍କ ଔରସେ ନହୁଷ ଜନ୍ମିଲେ ।
ସତ୍ୟଯୁଗରେ ନହୁଷ ହେଲେ ସୁରେଶ୍ୱର
ମତିଭ୍ରମ ହୋଇ ଗର୍ବ ବହିଲେ ଅପାର ।
ଋଷିମାନଙ୍କୁ ହାଦୋଳା ବୁହାଇଲେ ନେଇ
ଏହି ପ୍ରକାରେ କିଛିଦିନ ଗଲା ବହି ।
ଏକଦିନେ ଅଷ୍ଟାବକ୍ର ଋଷିଙ୍କୁ ସେ ଧରି
ହାଦୋଳାକୁ ବୁହାଇଲେ କିଛି ନ ବିଚାରି ।

ତହୁଁ ଅଷ୍ଟାବକ୍ର ଋଷି ଲଭି ମହାକଷ୍ଟ
ଶାପଦେଲେ ସର୍ପ ତୁହି ହୁଅରେ ପାପିଷ୍ଟ ।

ଅନ୍ୟଥା ନୋହିଲା ସେହି ଋଷିଙ୍କର ବାଣୀ
ସର୍ପ ରୂପକୁ ଧଇଲେ ରଜା ସେହିକ୍ଷଣି ।

ସର୍ପରୂପ ଧରି ରଜା ବନକୁ ଚଳିଲା
କେତେକାଳ ପରିଯନ୍ତେ ବନରେ ବୁଲିଲା ।

ସର୍ପମାନଙ୍କର ଅଟେ ଯେମନ୍ତ ସ୍ୱଭାବ
ମଣ୍ଡୂକ ଆଦିକରି ସେ ଭକ୍ଷେ ନାନା ଜୀବ ।

ସର୍ପ ଖାଇବା ନିମନ୍ତେ ଗରୁଡ଼ ଅଇଲେ
ଯେ ସର୍ପ ପାଇଲେ ତାକୁ ଭକ୍ଷଣ କରିଲେ ।

ନହୁଷ ମଣ୍ଡୂକ ନାମେ ସର୍ପ ହୋଇଥିଲେ
ଗରୁଡ଼ ଦେଖି ଲୁଚିଲା ସେହି ବନମାଳେ ।

ଗରୁଡ଼ ଭୟେ ସେ ଗଲେ ପଣ୍ଡ ନାମେ ଗିରି
ସେହି ସର୍ପକୁ ଗରୁଡ଼ ନ ପାଇଲା ଲୋଡ଼ି ।

ଗରୁଡ଼ର ଭୟେ ସେହୁ ପଶିଲା ବିବରେ
ସହସ୍ର ବରଷ ଯାଏ ନ ଆସେ ବାହାରେ ।

ଏକଦିନକର କଥା ଶୁଣ ନରପାଳ
ସ୍ତ୍ରବଦ ଅସୁର ଭୟ ହେବାରୁ ପ୍ରବଳ ।

ବଦିଷ୍ଠ ବାଲଖିଲ୍ୟ ଅନୁଷ୍ଟୁପ ମୁନି
ସେ ଗୁହାମଧ୍ୟେ ଲୁଚିଲେ ଦୁହେଁ ହୋଇ ଭୁନି ।

ସହସ୍ର ବର୍ଷରୁ ସର୍ପ ଥିଲା ଅନାହାର
ଦୁଇ ଋଷିପୁତ୍ର ପାଇ କଲାକ ଆହାର ।

ଅଷ୍ଟାବକ୍ର ଋଷି ଗଲେ ପୁଅ ଖୋଜିବାକୁ
ପୁଅଙ୍କୁ ନ ପାଇ ପୁଣି ଫେରିଲେ ଘରକୁ ।

ଧ୍ୟାନେ ଜାଣିଲେ ନହୁଷ ସର୍ପ କଲା ଗ୍ରାସ
ତହୁଁ ମହାମୁନି ହେଲେ କୋପରେ ଅବଶ ।

ଅଷ୍ଟାବକ୍ର ବୋଲେ ମୋର ବଂଶ କଲୁ ନାଶ
ରଜା ହୋଇ ସର୍ପ ହେଲୁ ଧିକ ତୋର ଯଶ ।

ଦୋଷ ଅନୁରୂପ ହୋଇ କ୍ରୂର ପଶୁଜାତି
ହଜାଇ ବସିଲୁ ସର୍ବ ପୂର୍ବ ଯଶ ଖ୍ୟାତି ।

ତୋହର ଦୁହିତା ଅଟେ ସୋହି ନାମେ ନାରୀ
ତୋର ମାଂସ ଭକ୍ଷୁ ଶ୍ୟେନପକ୍ଷୀ ରୂପ ଧରି ।

ଅଷ୍ଟାବକ୍ରଙ୍କ ଶାପରେ ନହୁଷ କୁମାରୀ
ଦୁଇ ଯୁଗ ଯାଏ ଥିଲା ପକ୍ଷୀରୂପ ଧରି ।

ପୁଣି ଅଷ୍ଟାବକ୍ରଙ୍କର ହୋଇଲା ବାହନ
ଋଷି ଯେଉଁଆଡ଼େ ଯାନ୍ତି କରେ ସେ ବହନ

ସତ୍ୟ ତ୍ରେତା ଯୁଗ ଯହୁଁ ହୋଇଲାକ ଶେଷ
ଦ୍ୱାପର ଯୁଗ ଆସିଣ ହୋଇଲା ପ୍ରବେଶ ।

ଋଷିଙ୍କ ବାହନ ରୂପେ ସର୍ବଦା ସେ ଥାଏ
ଏତେକାଳରେ ତା ପ୍ରତି ଋଷି ଦୟା ହୁଏ ।

ବୋଇଲେ ସୁନ୍ଦରୀ ଆରେ ନ କହ ତୁ ମୋତେ
ଏକମନ ହୋଇ ଶୁଣ କହଇ ମୁଁ ତୋତେ ।

ଉଡ଼ୁଥାଅ ତହିଁ ଯାଇ ଆକାଶର ମଧ୍ୟେ
ଦୁଃଶାସନ ଭୁଜ ଉପାଡ଼ିବ ଭୀମ ଯୁଦ୍ଧେ ।

ଫିଙ୍ଗିଣ ଦେବ ସେ ଭୁଜ ଆକାଶର ମାର୍ଗେ
ତୁ ତାହା ଧରିବୁ ଅନ୍ତରୀକ୍ଷେ ଥାଇ ବେଗେ ।

ତୋହର ବଂଶ ସେ ଦୁଃଶା ତାର ମାଂସ ଭକ୍ଷ
ମୋ ଦେଲା ଶାପରୁ ତୁହି ହୋଇଯାଅ ମୋକ୍ଷ

ଏହା କହି ମୁନିବର ତାକୁ ଦେଲେ ଛାଡ଼ି
ସେ ଦିନୁ ସେ ଦଶଦିଗେ ବୁଲେ ଉଡ଼ି ଉଡ଼ି ।

ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ନହୁଷ ଦୁହିତା ଶ୍ୟେନ ହେଲା ସେହିଦିନୁ ।

ଏବେ କି ସନ୍ଦେହ ଛେଦ ହୋଇଲା ତୁମ୍ଭର
ଯାହା ପଚାରିଲ ରଜା କହିଲୁ ବିସ୍ତାର ।

ଆଉର କଥାଏ ରଜା ମନଦେଇ ଶୁଣ
ଭୀମ ଦୁଃଶାସନ କଥା ଅପୂର୍ବ ଆଖ୍ୟାନ ।

ବାସବସୁଙ୍କର ଅଟେ ଦୁହିତା ହରିଣୀ
ତାହାକୁ କେତୁ ହେରାଇ ଅଇଲାକ ଘେନି ।

ତାଠାରୁ ବଳେ ମଙ୍ଗଳ ତାକୁ ଘେନିଗଲା
ତାହାପାଇଁ ଦୁହିଙ୍କର ସମର ହୋଇଲା ।

ସତ୍ୟଯୁଗ ଗତହେଲା କରନ୍ତେ ସମର
ଦେଖିଣ ତାଟକା ହେଲେ ସକଳ ଅମର ।

କଠୋର ସମର ଦେଖି ବିଜେକଲେ ଧାତା
ବୋଇଲେ ଯୁଦ୍ଧ ଏଥେ କେ ନାହାନ୍ତି ଦେଖାନ୍ତା

ଇନ୍ଦ୍ରେ ବୋଇଲେ ସମ୍ଭାଳ ତୁମ୍ଭେ ମଙ୍ଗଳକୁ
ସୂର୍ଯ୍ୟଙ୍କୁ ବୋଇଲେ ତୁମ୍ଭେ ରଖ ହେ କେତୁକୁ

ଏହା କହି ବ୍ରହ୍ମା ତହୁଁ ହୋଇଲେ ଅନ୍ତର
ଏ ଉତ୍ତାରୁ ଯାହା ହେଲା ଶୁଣ ନରେଶ୍ୱର ।

ସତ୍ୟ ଅନ୍ତେ ତ୍ରେତା ଯହୁଁ ହୋଇଲା ଆଗମ
ଇନ୍ଦ୍ର ଆଦିତ୍ୟ ପଶିଲେ ଗୌତମ ସଦନ ।

ଅହଲ୍ୟା ତ ଶୋଇଥିଲା ମୃତ ଶବ ହୋଇ
ତା ପରାଣ ମୁନି ସଙ୍ଗେ ଯାଇଥିଲେ ନେଇ ।

ଅହଲ୍ୟାର ଗର୍ଭେ ଇନ୍ଦ୍ର ପଶି ହେଲେ ଆତ୍ମା
ଶୃଙ୍ଗାର କଲେକ ତାଙ୍କୁ ସୂର୍ଯ୍ୟ ମହାତ୍ମା ।
ଆରଦିନ ସୂର୍ଯ୍ୟଦେବ ପଶିଲେ ତା ଗର୍ଭେ
ଶୃଙ୍ଗାର କଲେ ତାହାଙ୍କୁ ସୁରରାଜ ତେବେ ।
ଏହି ଦୁଇ ଦେବଙ୍କର ଅମୋଘ ବୀର୍ଯ୍ୟରେ
ସମୟେ ଜାତ ହୋଇଲେ ଦୁଇଟି କୁମରେ ।
ଗଉତମ କୋଳେ ଧରି ସେହି ବେନିବାଳ
ନାମ ଦେଲେ ସୋମଭଳା ଆଉ ରବିଭଳା ।
ସ୍ନାନେ ଗଲେ ଦୁଇପୁତ୍ର କନ୍ୟା ମୁନି ଘେନି
ଗୋଡ଼ ତାଟନ୍ତେ ଧଇଲେ କୋଳେ ପୁତ୍ରବେନି
ଅଞ୍ଜନାକୁ ଦୃଷ୍ଟି ସହୁଁ ନ କଲେକ କୋଳ
ପୋଡ଼ିଲା କହି ହୋଇଣ ଅତ୍ୟନ୍ତ ବ୍ୟାକୁଳ ।
ବୋଇଲେ ଜାରଜ ପୁତ୍ର ବାପା କଲ କୋଳ
ମୁଁ ତୁମ୍ଭ ଔରସେ ଜାତ ହୁଏ କଲବଲ ।
ଏହା ଶୁଣି ଗଉତମ ସେଠାରୁ ଫେରିଲେ
ପୁଣି ସମୁଦ୍ର କୂଳରେ ଯାଇ ଉଭା ହେଲେ ।
ବୋଇଲେ ନ ହୋଇଥିଲେ ଆମ୍ଭ ବୀର୍ଯ୍ୟଜାତ
ମର୍କଟ ହୋଇଣ ଆସ ମୋହର ଅଗ୍ରତ ।
ଏହା କହିଣ ଦୁହିଙ୍କୁ ଦେଲେ ସେ ପକାଇ
ମର୍କଟ ହୋଇ ଅଇଲେ ସେହି ବେନିଭାଇ ।
ମୁନି ନିଜ ଆଶ୍ରମକୁ ନ ଗଲେ ଲଜରେ
ଦୁହିଙ୍କୁ ଛାଡ଼ିଲେ ନେଇ କିଷ୍କିନ୍ଧ୍ୟା ବନରେ ।
ସେହି ବନର ନୃପତି ଅଟଇ ଖଡ଼୍‌ଗଦ
ସେ ବେନିପୁତ୍ର ପାଳିଲା ହୋଇଣ ସାନନ୍ଦ ।
ଅଗସ୍ତି କହିଲେ ମନୁ ନୃପଙ୍କ ଆଗର
ବାଳି ସୁଗ୍ରୀ ନାମ ହେଲା ସେହି ଦୁହିଙ୍କର ।
ସତ୍ୟଯୁଗେ ହୋଇଥିଲେ କେଭୁ ଯେ ମଗଳ
ତ୍ରେତାରେ ବାଳି ସୁଗ୍ରୀବ ହେଲେ ମହାବଳ ।
ପୁଣି ଦ୍ୱାପରେ ହୋଇଲେ ଭୀମ ଦୁଃଶାସନ
ଯୁଗେ ଯୁଗେ ଯାଙ୍କ ଜାଣ ଶତ୍ରୁତା ରାଜନ ।
ଆହେ ନାରାୟଣ ତୁମ୍ଭେ କି କର ନ ପାର
ସଂସାରେ ଲଗାଇ ଅଛ ଲୀଳା ଖେଳଘର ।
ଆରତେ ଯେତୁ ଡାକଇ ଶୁଣ କର୍ଣ୍ଣେଡେର
ତେଣୁ ଆରତନାଶନ ବୋଲାଅ ହେ ହରି ।
ନାନା ଅବତାର ଯୁଗେ ଯୁଗେ ହେଉଅଛ
ଦୁଷ୍ଟଙ୍କୁ ବିନାଶି ସଜ୍ଜନଙ୍କୁ ପାଳୁଛ ।
ଏପରି ପ୍ରଭୁଙ୍କୁ ଛାଡ଼ି ଅନ୍ୟେ ଯେତୁ ଭଜେ
ସକଳ ବ୍ୟର୍ଥ ତାର ସେହୁ ଦୁଃଖେ ମଜେ ।
ଏଥିପାଇଁ ଜଣାଏ ହେ କମଳାବିଳାସ
ଶାରଳା ଦାସଙ୍କୁ ରକ୍ଷ କରି ଦାସ ଦାସ ।

— —

## କର୍ଣ୍ଣଙ୍କର ଶୋଷକ ସର୍ପ ପ୍ରୟୋଗ

କହନ୍ତି ବଳଙ୍କ ରାଜା ହେ ମୁନି ପଣ୍ଡିତ
ତୁମ୍ଭ ପ୍ରସାଦରୁ ମୁହିଁ ହେଉଛି କୃତାର୍ଥ ।
ପ୍ରତିଦିନ ଶୁଣାଉଛ ଭାରତ ଆଖ୍ୟାନ
ତାହା ଶୁଣି ଆନନ୍ଦିତ ହୁଏ ମୋର ମନ ।
ସୁଧାରସରୁ ଅଧିକ ଲାଗଇ ମଧୁର
ତୁମ୍ଭ ଗୁଣ ସ୍ତୁତିବାକୁ ଶକ୍ତି କାହିଁ ମୋର ।
ଆଉ ଏକଗୋଟି କଥା ଘେନାକର ମୁନି
ରଣଭୂଇଁରେ ତ ଥିଲେ କୌରବ ସଇନ ।
ଦୁଃଶାସନ ବଧ ଅନ୍ତେ କୌରବ ନରେଶ
କେଉଁ କଥା କଲେ ପୁଣି କରନ୍ତୁ ପ୍ରକାଶ ।
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ
ବିଭାବରୀ ଅବସାନେ ହୁଅନ୍ତେ ପ୍ରଭାତ ।
ଯେ ଯାହାର ନିତ୍ୟକର୍ମମାନ ଶେଷକରି
ଦଉଡ଼ିଲେ ଦୁଇଦଳ ଅସ୍ତ୍ର ଶସ୍ତ୍ର ଧରି ।
ରଣକ୍ଷେତ୍ରେ କୁରୁସୈନ୍ୟ ପଡ଼ି ରହିଥିଲେ
ରାଜା ଆସିବା ଦେଖିଣ ସର୍ବେ ବାହାରିଲେ ।
କର୍ଣ୍ଣରଥ ଶଲ୍ୟବୀର ଧୀରେ ଧୀରେ ବାହି
ନନ୍ଦିଘୋଷ ରଥଆଗେ ଉଭାକଲେ ନେଇ ।
କର୍ଣ୍ଣବୀର ଅର୍ଜ୍ଜୁନକୁ ସମ୍ମୁଖରେ ଦେଖି
ଶର ପ୍ରୟୋଗ କରିଲେ ନିଜ ରୂପେ ଯୋଖି ।
ତାହା ଦେଖି ଧନଞ୍ଜୟ କରି ପ୍ରତିଶର
କର୍ଣ୍ଣଙ୍କ ପ୍ରୟୋଗ ଅସ୍ତ୍ର କରିଲେ ସଂହାର ।
ପୁଣିହିଁ ଅଯୁତେ ଶର ମାରନ୍ତେ ରାଧେୟ
ମେଘଶରରେ ଛେଦନ କଲେ ଧନଞ୍ଜୟ ।
ପଞ୍ଚତାଶର ମାରନ୍ତେ କର୍ଣ୍ଣ ମହାବଳୀ
ବଜ୍ରଶରେ ଧନଞ୍ଜୟ କରିଦେଲେ ଧୂଳି ।
ଏହିକାଳେ ଆଦ୍ରୀବଳି ନନ୍ଦନ ଶୋଷକ
ବୋଲେମୋତେପେଷିତୁମ୍ଭେ ହେ ବୀରନାୟକ
ନନ୍ଦିଘୋଷ ସହିତରେ କୃଷ୍ଣ ଧନଞ୍ଜୟ
ଏକାବେଳକେ ଗିଳିବି ଦେଖିବ ନିଶ୍ଚୟ ।

ଶୋଷକ ସର୍ପର କଥା ଶୁଣି କର୍ଣ୍ଣବୀର
ବୋଇଲେ ଏ କଥା ନୁହେଁ କ୍ଷତ୍ରିଙ୍କ ବିଚାର ।
ଏଥିରେ ମୋତେ ବହୁତ ହୋଇବ ଦୂଷଣ
ଏକଥା କିପାଇଁ କହୁ ମୋତେ ଅକାରଣ ।
ଅପଣାର ଅସ୍ତ୍ର ଥାଉଁ ଯେବେ ଯେ ଅନ୍ୟକୁ
ଅକ୍ରମେ ନରକଗଣ୍ଡ ହୁଅଇ ତାହାକୁ ।
ଏହି ପ୍ରକାରେ ଶାସ୍ତ୍ରରେ ଅଛଇ ପ୍ରମାଣ
ତୋତେ ପ୍ରୟୋଗ କଲେ ନୋହିବ କାରଣ
ସର୍ପ ବୋଲେ ନାହିଁ କର କିପାଁ ବୀରମଣି
ତୁମ୍ଭ ଉପଦ୍ରବ ସବୁ ନାଶିବ ଏକ୍ଷଣି ।
ଶଲ୍ୟ ବୋଇଲେ କିପାଇଁ ହେଉଛ ବିମୁଖ
ଗିଳିବ ବୋଲି କହୁଛି ଥରେ ଯେପି ଦେଖ ।
ଶଲ୍ୟ ଅନୁରୋଧକ୍ରମେ କର୍ଣ୍ଣ ମହାଭାଗ
ଆପଣା ଗୁଣେ ସର୍ପକୁ କରିଲେ ସଂଯୋଗ ।
ବୋଇଲେ ହେ ସର୍ପ ତୁମ୍ଭେ ଶୀଘ୍ର ହୋଇ ଚଳ
ନନ୍ଦିଘୋଷ ରଥସହ କୃଷ୍ଣାର୍ଜୁନେ ଗିଳ ।
ଏହା କହି ସେ ସର୍ପକୁ ଯହୁଁ ଦେଲେ ଛାଡ଼ି
ତହୁଁ ସେ ଚଳିଲା କୋପେ ଅର୍ଦ୍ଧାକାଶ ମାଡ଼ି
ଫାଳେ ପାଞ୍ଚି ଆକାଶରେ ଫାଳେ ରଖିତଳେ
ଏମନ୍ତ ତୁଣ୍ଡ ବିସ୍ତାରି ସେହି ସର୍ପ ଚଳେ ।
ପାଣ୍ଡବେ ଶର ମାଇଲେ ନିଜ ଗୁଣେ ଯୋଡ଼ି
ସବୁ ଶର ପୋଡ଼ିଯାଏ ସର୍ପଗର୍ଭେ ପଡ଼ି ।
ପାଣ୍ଡବଙ୍କ ଅଶୀକୋଟି ଯୋଦ୍ଧା ଏକମୁଖେ
ଶର ମାରନ୍ତେ ସେ ସର୍ପ ଗର୍ଭମଧ୍ୟେ ରଖେ ।
ପର୍ବତାଶର ମାଇଲେ ଅର୍ଜୁନ କ୍ରୋଧରେ
ଧନୁ ଛାଡ଼ନ୍ତେ ତିନିଶା ହେଲା ସେ ପଥରେ ।
ସେ ତିନି ପର୍ବତ ସର୍ପ ଗର୍ଭରେ ପଶିଲା
କଣ୍ଟକମାନଙ୍କେ ସବୁ ଭସ୍ମ ହୋଇଗଲା ।
ପୁଣି ପାଞ୍ଚଲକ୍ଷ ଶର ବିନ୍ଧିଲେ ଅର୍ଜୁନ
ସର୍ପ ଗର୍ଭ ମଧ୍ୟେ ପଡ଼ି ହେଲା ଅନ୍ତର୍ଦ୍ଧାନ ।
ବିଷର ଅନଳଜ୍ୱାଳା ଯାହା ଅଛି ମାଡ଼ି
ନାରଚ ଦଗ୍ଧ ହୁଅନ୍ତି ସର୍ପ ଗର୍ଭେ ପଡ଼ି ।
ପୁଣି ଅଗ୍ନି ମୁନା ଶର ପ୍ରହାରିଲେ ପାର୍ଥ
ସହସ୍ର ଶିଖାରେ ସେହି ହେଲା ଆଲୋକିତ ।
ସେ ଶର ସର୍ପ ମୁଖରେ ପଡ଼ିବାର କ୍ଷଣି
ଲିଭିଗଲା ଯେଉଁରୂପେ ଢାଳିଦେଲେ ପାଣି ।

ଶ୍ରୀକୃଷ୍ଣ ସହଦେବଙ୍କୁ ପଚାରିଲେ କହ
ଏ ଅସ୍ତ୍ର ପାଇଲା କାହୁଁ ସୂର୍ଯ୍ୟଙ୍କର ପୁଅ ।
ମନ୍ତ୍ରୀ ବୋଇଲେ ଶ୍ରବଣ କର ଭଗବାନ
ଯେକାଳେ ଖାଣ୍ଡବବନ ଦହିଲେ ଅର୍ଜୁନ ।
ଶୋଷକ ସର୍ପର ବଂଶ ଥିଲେ ଘର କରି
ଅଗ୍ନି ଜଳନ୍ତେ ସକଳ ତହିଁ ଗଲେ ମରି ।
ଏ ସର୍ପ କୌଶଳ କରି ତହୁଁ ପଳାଇଲା
ସେହିଦିନୁ ଅର୍ଜୁନଙ୍କୁ ମାରିବ ପାଞ୍ଚିଲା ।
ପୁଣି ଆମ୍ଭେମାନେ ଯେବେ ଗଲୁଁ ବନବାସ
ଅଜ୍ଞାତ ବରଷ ଆସି ହୁଅନ୍ତେ ପ୍ରବେଶ ।
ଶମୀ ବୃକ୍ଷର କୋଟରେ ଶସ୍ତ୍ରାଦି ରଖିଲୁ
ଗୁପତ ବେଶେ ବିରାଟ ଦେଶରେ ରହିଲୁ ।
କପଟ ତା ଜାଣି ସର୍ପ ସେ ଶମୀ କୋଟରେ
ଲୁଚି ରହିଲା ଏମନ୍ତ ବିଚାରି ମନରେ ।
ଯେକାଳେ ଏ ଅସ୍ତ୍ର ପାର୍ଥ ନେବାକୁ ଆସିବ
ସେକାଳେ ଏ ସର୍ପ ତାକୁ ଦଂଶନ କରିବ ।
ଗୋ ହରଣ କରିବାକୁ ଗଲେ କୁରୁବଳ
ବିରାଟ ରାଜ୍ୟରେ ସର୍ବେ ହୋଇଲେକ ଠୁଳ ।
ଉତ୍ତର ଚଳିଲେ ବୃକ୍ଷେ ଅସ୍ତ୍ର ଆଣିବାକୁ
କୋଟରେ ପୂରନ୍ତେ ହାତ ଦଂଶିଲା ତାହାକୁ ।
ଚିହ୍ନିଲା ଏ ସର୍ପ ଯହୁଁ ନୁହନ୍ତି ଅର୍ଜୁନ
ଭୟେ ସେ ସ୍ଥାନରୁ ବେଗେ କଲା ପଳାୟନ
ଦଂଶନମାତ୍ରେ ଉତ୍ତର ପରାଣ ତେଜିଲେ
ଗାରୁଡ଼ି ମନ୍ତ୍ର ବଳରେ ପାର୍ଥ ଜିଆଇଲେ ।
ସେ ସର୍ପ ସେଠାରୁ ଯାଇ ପଶିଲେ ସାଗର
ଅଭେଦକ ମଣି ନେଇ ହୋଇଲେ ବାହାର ।
କୁରୁସୈନ୍ୟ ଥିବାଠାକୁ କଲା ସେ ଗମନ
ସେ ମଣି କର୍ଣ୍ଣଙ୍କୁ ଦେଇ ପଶିଲା ଶରଣ ।
ସହଦେବ ମନ୍ତ୍ରୀ ବୋଲେ ଶୁଣିବା ଶ୍ରୀହରି
ବହୁକାଳୁ ଆମ୍ଭଙ୍କୁ ଏ ପ୍ରମାଦ ଚଳୁଛି ।
କୃଷ୍ଣ ବୋଇଲେ ବିରଳଚନ୍ଦ୍ର ବଂଶୀ ସେହି
ଶସ୍ତ୍ରର ଆଘାତେ ସେହି କେବେ ଧ୍ୱଂସି ନୋହି
ଏମନ୍ତ ଭଣନ୍ତେ ସହଦେବ ହୃଷୀକେଶ
ଗ୍ରାସିଲା ବେଗେ ଆସିଣ ରଥ ନନ୍ଦିଘୋଷ ।
ପାଣ୍ଡବଙ୍କ ବଳ ସର୍ବେ ପଳାଇଲେ ଖଜା
ମହାବିଶ୍ୱରୂପେ ସର୍ପ ଧାଇଁ ଗଳଗାଜ ।

ରଥାଶ୍ୱ ଗଜ ପଡ଼ଇ ଯାହା ତାର ମୁଖ
ସ୍ୱର୍ଗ ମର୍ତ୍ତ୍ୟ ପାଟିକର ସବୁ କରେ ଭକ୍ଷ ।
ଅର୍ଜ୍ଜୁନର ଶରକୁ ଯେ ନାହିଁ ତାର ଖାତ
କୃଷ୍ଣ ଭୟ କଲେ ଦେଖି କାଳସର୍ପ ମୂର୍ତ୍ତି ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ହନୁବୀର
ଏ ସଙ୍କଟୁ ନନ୍ଦିଘୋଷ ରଥ ରକ୍ଷା କର ।
ପାଣ୍ଡବେ ସର୍ବଦା ମୋର ପ୍ରିୟ ଅନୁଗତ
ତୁମ୍ଭଯୋଗୁ ଏ ଆପଦୁଁ ହୋଇବେ ମୁକତ ।
କୃଷ୍ଣଙ୍କ ଆଦେଶେ ହନୁ ବିଶ୍ୱରୂପ ଧରି
ଚକକୁ ଗୃପନ୍ତେ ରଥ ପଶେ ବସୁନ୍ଧରୀ ।
ନନ୍ଦିଘୋଷ ପାତାଳରେ ରହିଲା ଗୋପନେ
ସର୍ପ ପ୍ରବେଶ ହୋଇଲା ରଥ ଥିବା ସ୍ଥାନେ ।
ଭୟଙ୍କର ରୂପ ଧରି ସର୍ପ ମହାବଳୀ
କେବଳ ପତାକା ଗିଳି ତହୁଁ ଗଲା ଚଳି ।
କର୍ଣ୍ଣଙ୍କ ଗ୍ରମୁରେ ସର୍ପ ପରବେଶ ହୋଇ
ବୋଇଲା ରଥକୁ ଗିଳି ଆସିଅଛୁ ମୁହିଁ ।
କର୍ଣ୍ଣ ନ ଦେଖିଲା ଯହୁଁ ନନ୍ଦିଘୋଷ ରଥ
ପ୍ରଶଂସା କରିଲେ ତହୁଁ ସର୍ପକୁ ବହୁତ ।
ଅଦଭୁତେ ଆସି ମୋତେ ସାହାପକ୍ଷ ହେଲୁ
ଏବେ ତୁ ସର୍ପକୁଳର ମହତ ରଖିଲୁ ।
ଏକାଙ୍ଗ କ୍ଷତ୍ରିୟ ହେଲେ କୌରବ ଈଶ୍ୱର
ଧନ୍ୟ ଧନ୍ୟ ସର୍ପଶ୍ରେଷ୍ଠ ମହିମା ତୋହର ।
ସାଧୁ ସାଧୁ ପ୍ରଶଂସିଲେ କଉରବ ସୈନ୍ୟ
ଧନ୍ୟ କର୍ଣ୍ଣ ତୁମ୍ଭେ ତୁମ୍ଭ ପିତାମାତା ଧନ୍ୟ ।
ନନ୍ଦିଘୋଷ ରଥେ ଥିଲେ କୃଷ୍ଣ ବୀର ପାର୍ଥ
ଗୃରଗୋଟା ଅଶ୍ୱ ପୁଣି ଥିଲା ହନୁମନ୍ତ ।
ଏହାଙ୍କୁ ଗିଳି ଅଇଲା କର୍ଣ୍ଣଙ୍କର ଶର
ଏବେ ନିଃଶଙ୍କ ହୋଇଲେ କୌରବ ଈଶ୍ୱର
ଆଗହୁଁ ଏ ଶର ଯେବେ କର୍ଣ୍ଣ ପେଷିଥାନ୍ତେ
ତେବେ ଏତେ ଯୋଦ୍ଧା କପାଁ ସମରେ ମରନ୍ତେ
କୁରୁସୈନ୍ୟ ଏହା କହି ଆନନ୍ଦିତ ହୋଇ
ଜୟ ପତାକା ବାନ୍ଧିଲେ ସର୍ବେ ରଥେ ନେଇ
ଶକୁନି ବୋଇଲା ଶୁଣ ରାଜା ଦୁର୍ଯ୍ୟୋଧନ
କାହା ଦର୍ପେ ନାଶଯିବ କୃଷ୍ଣ ଅରଜୁନ ।
ଏମନ୍ତ କଥା କି ତୁମ୍ଭେ ବିଶ୍ୱାସ କରୁଛ
କର୍ଣ୍ଣର ଯେତେକ କଥା ସବୁ ଅଟେ ମିଛ ।

କୃଷ୍ଣ ନଷ୍ଟେଁ କରିଛନ୍ତି କୌଣସି ଉପାୟ
ହେ ରାଜା ଜାଣିବ ଏହା ପଶ୍ଚାତେ ନିଶ୍ଚୟ ।
ଏସନ ବିଚାର କରୁ ସଇନ ସମସ୍ତ
ଶୀଘ୍ରଗାମ୍ୟ ବେଗେ ଦଶିଲା ନନ୍ଦିଘୋଷ ରଥ ।
ସୂର୍ଯ୍ୟଙ୍କ କରଣ ପଡ଼ି ଯଥା ଉଦେ ଗିରି
ଦାଉ ଦାଉ ହୋଇ ଦିଶେ ରତନ ଯେପରି ।
ସେହିପରି ଜ୍ୟୋତିକରି ନନ୍ଦିଘୋଷ ରଥ
ପୂର୍ବବେଗେ ବାହାରିଲେ ଘେନି କୃଷ୍ଣ ପାର୍ଥ ।
ନନ୍ଦିଘୋଷ ଗୃଲନ୍ତେ ଯେ ଦେଇ ଘୋରରଡ଼ି
ଭୟେ କୁରୁସୈନ୍ୟ ଗଲେ ରଣଭୂଇଁ ଛାଡ଼ି ।
ବିସ୍ମୟ ହୋଇଲେ ଦେଖି ରାଜା ଦୁର୍ଯ୍ୟୋଧନ
ଲଜରେ ରହିଲା କର୍ଣ୍ଣ ମରଣ ସମାନ ।
କର୍ଣ୍ଣ ବୋଲେ ଗୁରୁତର ଅଧର୍ମ ମୁଁ କଲି
କ୍ଷତ୍ରିୟ ହୋଇଣ ମୁହିଁ ଧର୍ମକୁ ଲଙ୍ଘିଲି ।
ଏଥିପାଇଁ ପ୍ରଥମରେ କରୁଥିଲି ମନା
ଶଲ୍ୟଙ୍କ କଥାକୁ ରଖି ପାଇଲି ଲାଞ୍ଛନା ।
ଏମନ୍ତ ବିଚାରି ସର୍ପପ୍ରତି ଦୃଷ୍ଟି ଦେଇ
ବୋଇଲେ ଦେଖ ରେ ସର୍ପ ପଛେ କେ ଆସଇ
ସାକ୍ଷାତେ ଏ ନନ୍ଦିଘୋଷ ରଥ ଆସେ ଚଳି
କହ ସର୍ପ କାହାକୁ ତୁ ଆସିଅଛୁ ଗିଳି ।
କର୍ଣ୍ଣର ବଚନ ଶୁଣି ସର୍ପ କଲା ବାନ୍ତି
ଉଦରୁ କପିକେତନ ପଡ଼ିଲାକ କ୍ଷିତି ।
କର୍ଣ୍ଣ ବୋଇଲେ ପତାକା ଗିଳି କରୁ ଆସ୍ଥ
ରଥ ଗିଳିଥିଲେ ନଷ୍ଟେଁ ଫାଟନ୍ତା ତୋ ପେଟ
ଶୋଷକ ବୋଇଲା କର୍ଣ୍ଣ ଆଉଥରେ ପେଷ
ଏଥର ଗିଳି ଆସିବ ନଷ୍ଟେଁ ନନ୍ଦିଘୋଷ ।
ରଥ ଲୁଚାଇଲେ ନେଇ ପାତାଳ ଭୁବନ
ଏଥର କି ପୁର ଘୋଟି କରିବ ଗମନ ।
ଯେବଣ ଭୁବନେ ନେଇ ଲୁଚାଇବେ ରଥ
ସତ୍ୟ କରୁଛି ଗିଳିବ ନିଶ୍ଚୟ ତାହାନ୍ତ ।
କର୍ଣ୍ଣ ବୋଇଲେ କ୍ଷତ୍ରିୟ ହୋଇଲେ ନିସତ
ଦୂଷିତ କର୍ମ କରିଲେ ଧର୍ମ ନୁହେ ପ୍ରାପ୍ତ ।
ଦ୍ୱିତୀୟ ଥର ପେଷିଲେ ଧର୍ମ ହେବ ହାନି
କଥାଁ ତୁ କଠାଳ କରୁ ସର୍ପ ହୁଅ ତୁନି ।
ଦେଖ ତୁ ଅର୍ଜ୍ଜୁନ ଆସି କରୁଛି ସମର
ସୈନ୍ୟଙ୍କୁ ସଂହାର କରି ନିଏ ଯମଘର ।

ଏତେବେଳେ ପାଣ୍ଡବେ ସେ ଜିଣିଯିବେ ରଣେ
କପାଁ ତୁ କଣ୍ଠାଳ କରୁ ମୋତେ ଅକାରଣେ ।
ଶୋଷକ ବୋଇଲା ଶୁଣ ହେ ସୂର୍ଯ୍ୟଆତ୍ମଜ
ମୋର ବଂଶ ଉଦ୍ଧାରିବା ଅଟେ ତୁମ୍ଭ କାର୍ଯ୍ୟ
ପୁଣି ରାଜାଙ୍କର ନାଶ ହୋଇବ ଅଗତ
ନିଷ୍କଣ୍ଟକେ ରହିବେ ସେ ହୋଇ ଚକ୍ରବର୍ତ୍ତୀ ।
ଏ ଥରକ ପେଷ ମୋତେ ନିଶ୍ଚୟ ଗିଳିବ
କୌରବଙ୍କ ମନସ୍କାମ ଆଜ ପୂରିଇବ ।
ଶୁଣି କର୍ଣ୍ଣ ଅତିଶୟ ମନେ ହୋଇ କୋପ
ବୋଇଲେ ମୋ ପାଶୁଁ ବେଗେ ପଳା ପଳା ସର୍ପ
ଦେଖିବେ ଯାତ୍ରାକାଳେ ତୋର ଦେଖିଲେଆନନ
ଅଯାତ୍ରା ହୁଅଇ ଶାସ୍ତ୍ରେ ହୋଇଛି ଲିଖନ ।
ଦେହେ ପଡ଼ିଲେ ବର୍ଷକ ଧର୍ମ ହୁଏ ହାନ
କେବେ ହେଲେ ପିତୃଲୋକ ନ ପାଆନ୍ତି ପାଣି
କାମୁଡ଼ିଲେ ନିଶ୍ଚୟରେ ହୁଅଇ ମରଣ
ସର୍ପମାନଙ୍କର ଅଛି ଏତେ ମନ୍ଦଗୁଣ ।
ପଳାଇ ନ ଯାଇ ଆଜ ରହିଛୁ ମୋ ପାଶ
ତୋତେ ଲାଜ ନ ମାଡ଼ଇ ପୁଣି ବୋଲୁ ପେଷ
ମରଣ ଭୟରେ ଆସି ପଶିଲୁ ଶରଣ
ମୋ ରଥରେ ରଖି ତୋତେ ପାଇଲି କଷଣ
ନାନା ଦୋଷ ନ ଧରି ମୁଁ ରଖିଥିଲି ତୋତେ
ଏତେକାଳେ ହେଲୁ ତାର ପ୍ରତିଫଳ ମୋତେ
ବଂଶ ବୁଡ଼ାଇ ବଞ୍ଚିବା କଲୁ ମନେ ସଧ
ତୋ ଛୁରକୁ ପେଷି ହେଲା ମୋର ଶିରଚ୍ଛେଦ
ଆରେ ପାପିସର୍ପ କାହିଁ ଚାହୁଁ ଫେର ଫେର
ପ୍ରାଣ ଯାଉ ରେ ତୋହର ମୂର୍ଦ୍ଧା ଫାଟିକର ।
ପଳାରେ ନିର୍ଲ୍ଲଜ ଦୂର ପଳା ମୋ ରଥରୁ
ବନ୍ଧୁକାର୍ଯ୍ୟ ନାଶ କଲି ତୋହର ହେତୁରୁ ।
ଶୁଣି ଶୋଷକ ବୋଇଲେ କର୍ଣ୍ଣ ଶୁଣ ଗିର
ଅକାରଣେ ଭାଙ୍ଗିଲୁ ତୁ ଦର୍ପକୁ ମୋହର ।
ପୁଣି ବୃଥା ଝିଙ୍କାସିଲୁ ମିଛେ ଦେଇ ଦୋଷ
ତୋ ରଥଚକକୁ ଆଜ ଭୂମି କରୁ ଗ୍ରାସ ।
ଦୁଇଦଣ୍ଡ ମାତ୍ର ଚକ ଭୂମିରେ ପଶିବ
ତହିଁରୁ ଉଠିଲେ ତୋତେ କେହି ନ ଜିଣିବ
ଶାପଦେଇ କାଳ ସର୍ପ କର୍ଣ୍ଣ ରଥ ଛାଡ଼ି
ପଳାଇଲା ମହାକ୍ରୋଧେ ଆକାଶରେ ଉଡ଼ି ।

କର୍ଣ୍ଣ ତ୍ତେର ଶୁଣ ଆହେ ମନୁ ନୃପବର
ବ୍ୟାଘ୍ର ସର୍ପ ଖଡ଼୍ଗଧାରୀ ଆବର କୁମ୍ଭୀର ।
ମର୍କଟ ଭଲ୍ଲୁକ ସିଂହ ଏ ସକଳ ପ୍ରାଣୀ
କାହାର ନୁହନ୍ତି କାଳେ ଦୂତେ ଥିବ ଜାଣି ।
ଯେଉଁ ଜନ ଏମାନଙ୍କୁ ଦିଅଇ ଆଶ୍ରୟ
କାଳେ ନାଶକୁ ଭଜଇ ସେ ପ୍ରାଣୀ ନିଶ୍ଚୟ ।
ଶରଣ ରଖିଲେ କର୍ଣ୍ଣ ଅସମୟ କାଳେ
ତାକୁ ଶାପ ଦେଲା ଉପକାରର ବଦଳେ ।
ଆହେ ଜ୍ଞାନୀ ବୃଦ୍ଧମାନେ କରିବ ବିଚାର
ଉପକାର କରିବାରୁ ହେଲା ଅପକାର ।



## କର୍ଣ୍ଣବଧ

କର ଯୋଡ଼ି ଜଣାଇଲେ ବଳଙ୍କ ଈଶ୍ୱର
ହେ ଅଗସ୍ତି ମୁନି ମୋର କଥା ଘେନା କର ।
କୃଷ୍ଣଙ୍କ କୌଶଳେ ସର୍ପ ଗଲା ଲାଜ ପାଇ
ଶୂନ୍ୟ ପଥେ ଉଡ଼ିଗଲା କର୍ଣ୍ଣେ ଶାପଦେଇ ।
ତତ୍ପରେ କେବଣ କଥା କରିଲେ କୌରବେ
ସେହି କଥା ଶୁଣିବାକୁ ମୋର ଇଚ୍ଛା ଏବେ ।
ବାହାନ୍ତି ସେ ନନ୍ଦଘୋଷ ରଥ ଦେବହର
କର୍ଣ୍ଣର ସମ୍ମୁଖେ ନେଇ ରଥ ସେ ଉଭାର ।
ନନ୍ଦଘୋଷ ରଥ ଦେଖି କମ୍ପମାନ କର୍ଣ୍ଣ
ଶତ ଶତ ଶର ବନ୍ଧେ ରାଧାର ନନ୍ଦନ ।
ଲୁହାର ନାରାଚ ଶଙ୍ଖଚିଲ ପକ୍ଷୀ ଛନ୍ଦ
ସହସ୍ରେ ନାରାଚ କର୍ଣ୍ଣ ପୂରାଇଣ ବନ୍ଧ ।
ପୁଣି ନାରାଚ ବନ୍ଧିଲା କର୍ଣ୍ଣ ସସ୍ତ୍ରଜନ
ଅର୍ଜ୍ଜୁନ ଛେଦିଲା ତାହା କୁବେରାସ୍ତ୍ର ଘେନ ।
ପୁଣି ସୁରଶତ ବାଣ କର୍ଣ୍ଣ ପ୍ରହାରିଲେ
ଏକଶରେ ଧନଞ୍ଜୟ ସବୁ କାଟିଦେଲେ ।
କୁହୁକ ଶରକୁ ପୁଣି ମାରିଲେ ରାଧେୟ
ଦିଗ ବିଦିଗ ହୋଇଲା ଅନ୍ଧକାରମୟ ।
ଦଶଦିଗ ଅନ୍ଧକାର ନ ଦିଶଇ କିଛି
ମାରିଲେକ ସୂର୍ଯ୍ୟାବର୍ତ୍ତ ଶର ସବ୍ୟସାଚୀ ।
ସୂର୍ଯ୍ୟଙ୍କର ତେଜକୁ ସେ ଯେଣୁ ପ୍ରକାଶିଲା
ଫିଟିଲା କୁହୁକ ଦଶଦିଗ ସେ ଦିଶିଲା ।
ପୁଣି ଅଯୁତେକ ଶର କର୍ଣ୍ଣ ମହାବୀର
କପିକେତନ ଉପରେ କଲେକ ପ୍ରହାର ।

ଶୂର ସହସ ମାଇଲେ ଶୂଳେଶଟି ସ୍ତମ୍ଭକୁ
ସହସ୍ରେ ମାଇଲେ ପୁଣି ରଥ ଉପରକୁ ।
ପାର୍ଥଙ୍କୁ ପେଷିଲେ ଶୂହ୍ନେଁ ଅଯୁତେକ ଶର
ତା ଦେଖି ଆଶ୍ଚର୍ଯ୍ୟ ହେଲେ ଯାଦବ ଈଶ୍ୱର
ଅଯୁତେ ଶର ପ୍ରହାରି ବୀର ଧନଞ୍ଜୟ
କର୍ଣ୍ଣଙ୍କ ସକଳ ଅସ୍ତ୍ର କରିଦେଲେ କ୍ଷୟ ।
ପୁଣି କପିକେତନକୁ କର୍ଣ୍ଣ ଧନୁର୍ଦ୍ଧର
ଦଶସହସ୍ର ନାରାଚ କରିଲେ ପ୍ରହାର ।
ସହସ୍ରେ ଶର ବିନ୍ଧିଲେ ସେ ଶୂର ଅଶ୍ୱଙ୍କୁ
ପଞ୍ଚବିଂଶ ଶରେ ପାର୍ଥ ଛେଦିଲେ ସବୁଙ୍କୁ ।
ପର୍ବତାଶର ମାଇଲେ ସୂର୍ଯ୍ୟଙ୍କ ନନ୍ଦନ
ବଜ୍ରଶର ମାରି ପାର୍ଥ କରିଦେଲେ ଚୂର୍ଣ୍ଣ ।
ପାଞ୍ଚଶତ ଶର ପୁଣି ପେଷିଲେ ରାଧେୟ
ଗର୍ଜନ ନାଦେ ଘୋଟିଲା ବିଦ୍ୟୁତ ପରାୟ ।
ବଜ୍ରାବଳି ଶର ମାରି ପାର୍ଥ ମହାବଳୀ
କର୍ଣ୍ଣର ସକଳ ଶର କରିଦେଲେ ଧୂଳି ।
ପୁଣି କର୍ଣ୍ଣ ମହାବୀର ଧରି ଅଗ୍ନିଶର
ପ୍ରହାରନ୍ତେ କମ୍ପମାନ ହେଲା ତିନିପୁର ।
ଉଭୟ ଦଳର ସୈନ୍ୟ ପଳାଇଲେ ଘୁଞ୍ଚି
ପବନାଶର ମାଇଲେ ଅର୍ଜ୍ଜୁନ ଆମଞ୍ଚି ।
ପବନ ଘାତେ ଅନଳ ହୋଇଲା ପ୍ରବଳ
ପଡ଼ିଲା କୌରବଥାଟ ପୋଡ଼ିଲା ସକଳ ।
ନିଜ ଶର ନିଜ ସୈନ୍ୟ କରଇ ଦହନ
ବାଧହୋଇ ମେଘାଶର ପ୍ରହାରିଲେ କର୍ଣ୍ଣ ।
ଯହୁଁ ଜଳବୃଷ୍ଟି ହେଲା ପ୍ରବଳ ରୂପରେ
ତହୁଁ ଅଗ୍ନି ଲିଭିଗଲା ଆପଣା ଥାଟରେ ।
ବେଳକୁବେଳ ପ୍ରବଳ କର୍ଣ୍ଣ ମହାବୀର
ଶର ପ୍ରୟୋଗ କରନ୍ତି ନାହିଁ ଅବସର ।
ଶରମାନଙ୍କ ତେଜରେ ଆଖି ଯାଏ ବୁଜି
ଗଗନରେ ଦିଶେ ଯେହ୍ନେ ବିଦ୍ୟୁତ୍ ରାଜିରାଜି
କର୍ଣ୍ଣଙ୍କ ସମର କଥା ଅତି ଅକଥନ
ସୈନ୍ୟ ଲୋଟନ୍ତି ଯେସନ ବାତେ ରମ୍ଭାବନ ।
କି ଅବା ଆଷାଢ଼ମାସ ହେଲେ ଉପସ୍ଥିତ
ତାଳବନେ ପକ୍ୱତାଳ ପଡ଼ଇ ଯେମନ୍ତ ।
ସେହିପରି କର୍ଣ୍ଣଙ୍କର ସୁତୀକ୍ଷ୍ଣ ଶରରେ
ସୈନ୍ୟଙ୍କର ମୁଣ୍ଡ ଛିଣ୍ଡି ପଡ଼ଇ ତଳରେ ।

ଏହି ଅସମ୍ଭବ ଯୁଦ୍ଧ ନ ସରେ କହିଲେ
ଭୂଚରେ ଖେଚରେ ଥାଇ କବନ୍ଧ ନାଚିଲେ ।
କର୍ଣ୍ଣାର୍ଜ୍ଜୁନ ନିରପେକ୍ଷ ସମର କରନ୍ତି
ସମକକ୍ଷ ଭାବ ଦେଖି ଅସ୍ୱାଦ ଗୁଳନ୍ତି ।
ସୈନିକ ସୁଭଟମାନେ ଜୀବଆଶା ଛାଡ଼ି
ରଣକ୍ଷେତ୍ରେ ଦୁଇବଳ ପଡ଼ିଛନ୍ତି ମାଡ଼ି ।
ରଥୀ ପଦାତି ସକଳେ ହେଲେ ଏକ ମେଳ
ଏରୂପେ କୌରବ ସୈନ୍ୟ ଲଗାଇଲେ ଗୋଳ
ଏମନ୍ତ ଅବସ୍ଥା ଦେଖି ଦ୍ରୁପଦ କୁମାର
ନବଲକ୍ଷ ସୈନ୍ୟ ଘେନି ହେଲା ଅଗ୍ରସର ।
ଅର୍ବୁଦେକ ସୈନ୍ୟ ଘେନି ମାନଚକ୍ରବର୍ତ୍ତୀ
ସମର କରିବା ପାଇଁ ଚଳିଲେ ତତ୍ତି ।
ଦୁର୍ଯ୍ୟୋଧନ ଉଗ୍ରମୂର୍ତ୍ତି ଦେଖିଣ ନକୁଳ
ତିନିଲକ୍ଷ ଗଜ ଯୋଦ୍ଧା ଘେନାଇ ଚଳିଲ ।
ଠିଆହେଲେ ଦୁର୍ଯ୍ୟୋଧନ ସମ୍ମୁଖରେ ଆସି
ସମସ୍ତଙ୍କ ହାତେ ଅଛି ଯାଠି ନବନଶୀ ।
ମନ୍ତ୍ରୀ ଚୂଡ଼ାମଣି ପୁଣି ହୋଇଲେ ବାହାର
ସଙ୍ଗେ ନେଲେ ପାଞ୍ଚଲକ୍ଷ ରଥ କଶୀଦର ।
ଆଉର ସେ ତିନିଲକ୍ଷ ସୈନ୍ୟ ସହିତରେ
ପ୍ରବେଶ ହୋଇଲେ କୁରୁସୈନ୍ୟର ଭିତରେ
କୁନ୍ତ ଖଡ଼ଗ ଶାବେଳ ପରିଘ ଯେ ଯାଠି
ଦଣ୍ଡ ଘେନି ଶକୁନିର ସମ୍ମୁଖରେ ଭେଟି ।
ଶ୍ୱେତ ହସ୍ତୀ ପୃଷ୍ଠେ ବିଜେ ରାଜା ଯୁଧିଷ୍ଠିର
କୋପ ହୋଇ ଶ୍ରୀଭୁଜରେ ଧରି ଧନୁଶର ।
ବାହାର ହେଲେ କୌରବ ସଙ୍ଗେ କରି ରଣ
ଏହିକାଳରେ ଶକୁନି ତାହାଙ୍କୁ ଭେଟିଣ
ବୋଇଲା ଯେ ରହ ରହ ଆରେ ଯୁଧିଷ୍ଠିର
ଦୁର୍ଯ୍ୟୋଧନ ମାରି ପରା ହେବୁ ନୃପବର ।
ଆଗେ ମୋ ହାତରୁ ଯେବେ ରହିବୁ ତୁ ବର୍ତ୍ତି
ତେବେ ସିନା ପଛେ ହେବୁ ରାଜଚକ୍ରବର୍ତ୍ତୀ ।
ଏହା କହି ଘୋରନାଦେ କଲା ଆସ୍ଫାଳନ
ରଥେ ଥାଇ ଏ ସକଳ ଦେଖି ଭଗବାନ ।
ସହଦେବଙ୍କୁ ବୋଇଲେ ପାଶକୁ ଡକାଇ
ଦେଖ ଶକୁନି ଧର୍ମଙ୍କୁ କଟାଳ କରଇ ।
ଶୁଣି ସହଦେବ ତହୁଁ ଗଲେକ ଦଉଡ଼ି
ମତ୍ତବ୍ୟାଘ୍ର ଛାଗପଲ ଯେହ୍ନେ ନଏ ତଡ଼ି ।

ସେହିରୂପେ କୁରୁସୈନ୍ୟ କରିଣ ମନ୍ଥନ
ପ୍ରବେଶ ହୋଇଲେ ଯଥା ଧର୍ମଙ୍କ ନନ୍ଦନ ।
ସୁଧାର୍ଷ୍ଟିଙ୍କୁ ପଛକରି ମର୍ଦ୍ଦି ଚୂଡ଼ାମଣି·
ଶକୁନି ସମ୍ମୁଖେ ରଥ ରଖାଇଲେ ଆଣି ।
ବଳୟ ମଣିମୁକୁଟେ ଭୂଷିତ ହୋଇଣ
କେହି ରଥେ କେହି ଗଜେ କରି ଆରୋହଣ
ଏକ ମୁଖରେ ସକଳେ କଲେକ ସମର
ଶର ଆଚ୍ଛାଦେ ମହୀ ଦିଶେ ଅନ୍ଧକାର
ରଥାଶ୍ୱ ଗଜ ପଦାତି ସର୍ବେ ମଦମତ୍ତ
ମତ୍ତାମତ୍ତ ହୋଇ ପଡ଼ୁଛନ୍ତି ଗଜଦନ୍ତା ।
ଦେବତାଙ୍କୁ ଅଗୋଚର କର୍ଣ୍ଣବୀର ରଣ
ପଲକମାତ୍ରେ ପେଷନ୍ତି ଲକ୍ଷ ଲକ୍ଷ ବାଣ ।
ଏହି ରୂପରେ ସମର ହୁଅନ୍ତେ ପ୍ରବଳ
କର୍ଣ୍ଣର ରଥ ହୋଇଲା ଅତି ଅସମ୍ଭାଳ ।
ଗୋତକ ସର୍ପ ଯେରୂପେ ଦେଇଥିଲ ଶାପ
କର୍ଣ୍ଣଙ୍କୁ ଫଳିଲା ଆସି ସେହି ଅନୁରୂପ ।
କର୍ଣ୍ଣଙ୍କ ସମରବେଳେ ରଥ ଦ୍ରୁତେ ଚଳେ
ସହି ନ ପାରିଣ ଚକ ପଶିଲା ଭୂତଳେ ।
ନନ୍ଦିଘୋଷ ରଥ ମଧ୍ୟ ହେଲା ଭୂମିଗତ
ଅଚଳ ହୋଇଣ ରଥ ନ ଚଳେ କିଞ୍ଚିତ ।
ମେରୁ ପର୍ବତରୁ ଭାରି ନନ୍ଦିଘୋଷ ରଥ
କିଞ୍ଚିତରେ ଟେକିଦେଲେ ତାହା ଜଗନ୍ନାଥ ।
କର୍ଣ୍ଣ ବୋଇଲେ ରେ ବାବୁ ଶୁଣ ବୀର ପାର୍ଥ
କିଞ୍ଚିତ ସମର ରଖ ତୋଳେ ମୋର ରଥ ।
ଶରଣରକ୍ଷଣ ବୋଲି ଉଡ଼ଇ ତୋ ବାନା
ବିରଥୀ ହୋଇଛି ମୋତେ ପ୍ରମାଦ ଦିଅନା ।
ଶୁଣ ସମର ନିୟମ ଯେ ବିଧି ବିଧାନ
ନୀତିଶାସ୍ତ୍ରମାନଙ୍କରେ ହୋଇଛି ଲିଖନ ।
କେଶକୁ ମୁକୁଳା କରି ଯେହୁ ଠିଆହେବ
ଅସ୍ତ୍ରଘାତ ତା-ଉପରେ କେଭେ ନ କରିବ ।
ଅସ୍ତ୍ରହୀନ ହୋଇ ଯେବେ ଥିବ ଶୂନ୍ୟହସ୍ତ
ତାହାକୁ ଦେଖିଲକ୍ଷଣି କରିବ ତ୍ୟକତ ।
ବାଳ ମୁକୁଳା ଥାଇବ ଅଙ୍ଗ ଅସମ୍ଭାଳ
ଅସ୍ତ୍ର ଶସ୍ତ୍ର ଛାଡ଼ି ହାତ ଯୋଡ଼ିଲେ କପାଳ ।
ଦାନ୍ତେ କୁଟା କୁଟାଇଲୁ ଯେ ବାନ୍ଧିବ ଗଳେ
ଯାନ ବାହନାଦି ଛାଡ଼ି ଉଭାହେବ ତଳେ ।
ଶରଣ ବୋଲି କହିବ ଯେ ଜନ ମୁଖରେ
ରଣ କରୁ କରୁ ପିଠି ଯେ ଦେବ ସମରେ ।
ଯେବଣ କ୍ଷତ୍ରୀ ହୋଇବ ସମରେ ନିଯତ
ତାକୁ ପରିତ୍ୟାଗ କରି ଚଳିବ ତ୍ୱରିତ ।
ଏମନ୍ତ ବ୍ୟକ୍ତିମାନଙ୍କୁ ଯେହୁ ନାଶ କରେ
ଜୀବତେ ଅଯଶ ମଲେ ପଡ଼ଇ ନର୍କରେ ।
ତୁ ଗୁଣବନ୍ତ ପଣ୍ଡିତ ଆହେ ଅରଜୁନ
ସାକ୍ଷୀ ହୋଇ ରହିଛନ୍ତି ହରି ଭଗବାନ ।
ଏଠାରେ କିଞ୍ଚିତ ପାପ ହୁଏ ଗୁରୁତର
ଅଳପ ପୁଣ୍ୟ କରିଲେ ହୁଅଇ ଅପାର ।
ଦୁଇଦଣ୍ଡ ମାତ୍ର ରହ ସମର ନ କରି
କରିବ ସମର ରଥ ଉଠିଲେ ମୋହରି ।
କର୍ଣ୍ଣଙ୍କ ମୁଖୁଁ ଏପରି ବଚନକୁ ଶୁଣି
ସ୍ତମ୍ଭିତ ହୋଇ ରହିଲେ ପାର୍ଥ ବୀରମଣି ।
ଅର୍ଜୁନ ଅବସ୍ଥା ଦେଖି ଦେବ ଜଗନ୍ନାଥ
ବୋଇଲେ ସ୍ତମ୍ଭିତ କପାଁ ହେଲ ଆହେ ପାର୍ଥ
ଚଞ୍ଚଳ ଗତିରେ ଶର କର ହେ କ୍ଷେପଣ ।
କର୍ଣ୍ଣର ଶିରକମଳ କାଟ ଏହିକ୍ଷଣ ।
ଅର୍ଜୁନ ବୋଇଲେ ପ୍ରଭୁ ହୋଇଛି ବିରଥୀ
ଧର୍ମର କଥା ବଚନେ ବହୁତ କହନ୍ତି ।
ଏ ଅଧର୍ମ କଥା ମୁହିଁ କପାଇଁ କରିବି
ଦୁଇଦଣ୍ଡ ପରେ ରଥେ ଉଠିଲେ ମାରିବି ।
ଏଡ଼େ ବଡ଼ ଯୋଦ୍ଧାକୁ ମୁଁ ଆହେ ଦୟାମୟ
ବିନା ସମରେ କେମନ୍ତେ କରିବଇଁ କ୍ଷୟ ।
ବିରଥୀ ଯୋଦ୍ଧାକୁ ମୁହିଁ ନ ମାରଇ ବାଣ
ଏହା କି ନଜାଣ ତୁମ୍ଭେ ଆହେ ନାରାୟଣ ।
ଶୁଣି ସୂର୍ଯ୍ୟଙ୍କ ତନୟ ବୋଇଲେ ହେ ହରି
ବିରଥୀ ସଙ୍ଗେ ଯୁଝିବ ଅଧର୍ମ ଆଚରି ।
ତୁମ୍ଭଠାରେ ଏ ସକଳ ହେବ କି ସଙ୍ଗତ
ତାହା ଶୁଣି ବୋଲୁଛନ୍ତି ଜଗତର ନାଥ ।
ସଦା ଧର୍ମପଥେ ତୁମ୍ଭେ କର ବିଚରଣ
ଅଧର୍ମ କେମନ୍ତେ ତାହା ଭ୍ରମରେ ନ ଜାଣ ।
ଯେବେ ବନେ ଯାଇଥିଲେ ଏହି ପାଞ୍ଚଭାଇ
ମୃଗୟା ବିନୋଦେ ବନେ ବୁଲୁଥିଲେ ଏହି
ସିନ୍ଧୁରାଜା ଜୟଦ୍ରଥେ ଦେଲ ପଠାଇଣ
ଦ୍ରୌପଦୀଙ୍କୁ ନେଉଥିଲ କରି ଚୋରପଣ ।

ପୁଣି ଭିଆଇଲ ତୁମ୍ଭେ କପଟରେ ପଶା
ରାଜ୍ୟ ଧନ ଜିଣି ନେଲ ଏ ହେଲେ ନିରାଶା ।
ଏ ପଞ୍ଚଭାଇଙ୍କୁ ସଭାତଳେ ବସାଇଲେ
କେତେ ବା କହିବ ଯେତେ ମନ୍ଦ ଗାଳିଦେଲେ
କୃଷ୍ଣାକେଶ ଧରି ଦୁଃଶା ଆଣିଲା ସଭାକୁ
ବିବସ୍ତ୍ର କଲ ଦେଖିବାପାଇଁ ତା ଜାନୁକୁ ।
ଏ ସକଳ ଧର୍ମକଥା ତୁମ୍ଭର ଅଛଇ
ଏତେବେଳେ କହୁଅଛ ଲାଜ ନ ମାଡ଼ଇ ।
ଭୀମକୁ ମିଷ୍ଟାନ୍ନ ସଙ୍ଗେ ଖୁଆଇଲ ବିଷ
ବିଷଭାରେ ଯେଉଁକାଳେ ହେଲେ ସେ ଅବଶ
ହାତ ଗୋଡ଼ ବାନ୍ଧି ପୁଣି ଫିଙ୍ଗିଲ ଜଳରେ
ଜଳଜନ୍ତୁ ଖାଉ ବୋଲି ବିଚାରି ମନରେ ।
ଯୋଡ଼ୁ ଏ ତୁମ୍ଭର ଧର୍ମ କେମନ୍ତ ଅଛଇ
ଆତୁରେ କହୁଛୁ ଧର୍ମ ଶୁଣ ମନଦେଇ ।
ସବୁକାଳେ ତୁମ୍ଭେମାନେ ଚଳ ଧର୍ମବାଟେ
ଘର କଲ ଝୁଣା ଘୃତ ଜଉ ଛଣପାଟେ ।
ଅତି ଗଉରବ କରି ପାଣ୍ଡବଙ୍କୁ ନେଲ
ସେହି କପଟ ଗୃହରେ ତାଙ୍କୁ ରଖାଇଲ ।
ଗୁପତରେ ପୁରଞ୍ଜନ ପଣ୍ଡାକୁ ପଠାଇ
ଅର୍ଦ୍ଧରାତ୍ରେ ନିଆଁ ଦେଲ ସେ ଘରେ ଲଗାଇ
ବିକଳେ ପଞ୍ଚପାଣ୍ଡବେ ପଶିଲେ ବିବରେ
ସେଠାରୁ ଉଦ୍ଧାର ହେଲେ କୌଣସି ପ୍ରକାରେ
ଏହା ନୁହେଁ କି ତୁମ୍ଭର ପରମାର୍ଥ ଧର୍ମ
ଆତୁରେ କହୁଛୁ ଶୁଣ କରିଛ ଯେ କର୍ମ ।
ଚଉଦ ବରଷ ମାତ୍ର ସୁଭଦ୍ରା ତନୟ
ନ ଜାଣି ବ୍ୟୂହେ ପଶିଲା ହୋଇ ଅସହାୟ ।
ଧର୍ମ ଯୁଦ୍ଧରେ ତାହାକୁ ମାରି ନ ପାରିଲ
ବେଢ଼ି ମାରିବ ବୋଲଣ ସର୍ବେ ବିଚାରିଲ ।
ଏକ ଶିଶୁକୁ ବେଢ଼ିଲେ ଅର୍ବୁଦ ଧାନୁଷ୍କୀ
ସମସ୍ତେ ମିଶି ମାରିଲ ଏ ଧର୍ମ ନୁହେଁ କି ।
ଅଭିମନ୍ୟୁ କଥା କୃଷ୍ଣ କରନ୍ତେ ପ୍ରକାଶ
ଅର୍ଜ୍ଜୁନଙ୍କ ମନେ କ୍ରୋଧ ଜନ୍ମିଲା ବିଶେଷ ।
ପୁଣରପି ବୋଇଲେ କୃଷ୍ଣ ଶୁଣ ଧନଞ୍ଜୟ
ବିଳମ୍ବ ନ କର ଶତ୍ରୁ ବେଗେ କର କ୍ଷୟ ।
ଦୁଇଦଣ୍ଡ ମଧ୍ୟେ ଯେବେ ତା ରଥ ଉଠିବ
ତେବେ ତାହାକୁ ସମରେ କେହି ନ ପାରିବ ।

ଏମନ୍ତ ବଚନ ଶୁଣି ବୀର ଅରଜୁନ
ବୋଇଲେ ହେ କର୍ଣ୍ଣ ଧର ତୁମ୍ଭ ଶରାସନ ।
ପୁତ୍ରଶୋକେ ମୋର ମନ ଦ୍ରବଇ ଅସ୍ଥିର
ବନାମୁଖରେ ତୁମ୍ଭଙ୍କୁ କରିବ ସଂହାର ।
ଏହା କହି ଗାଣ୍ଡିବରେ ବସାଇଲେ ବାଣ
କର୍ଣ୍ଣର ବୁଦ୍ଧି ନ ସ୍ଫୁରେ ଏମନ୍ତ ଦେଖିଣ ।
ଶଲ୍ୟରାଜ ବୋଇଲେ ହେ ଶୁଣ ସୂର୍ଯ୍ୟସୁତ
ନିପାତ ହେଲେ କି ଆଉ ଛାଡ଼ିବେକ ପାର୍ଥ ।
ଶଲ୍ୟଙ୍କ ବଚନ ଶୁଣି କର୍ଣ୍ଣ ଧନୁର୍ଦ୍ଧର
ଆପଣା କୋଦଣ୍ଡ ଧରି କରିଲେ ଟଙ୍କାର ।
ନନ୍ଦିଘୋଷେ ରହିଛନ୍ତି ବୀର ଅରଜୁନ
ସେ ରଥ ସହସ୍ର ତାଳ ଉଚ୍ଚର ସମାନ ।
କର୍ଣ୍ଣ ପାଦ ଗଣ୍ଡ କରିଅଛଇ ଭୂମିରେ
କେଉଁପରି ସମ ହେବ ଅର୍ଜ୍ଜୁନ ସଙ୍ଗରେ ।
ଯେତେ ଯେତେ ଅସ୍ତ୍ର କର୍ଣ୍ଣ କରଇ ପ୍ରହାର
କଣ୍ଟତମାନେ ଅର୍ଜ୍ଜୁନ କରନ୍ତି ସଂହାର ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ସବ୍ୟସାଚୀ
ଗୋଷକ ସର୍ପ କର୍ଣ୍ଣଙ୍କୁ ଶାପ ଦେଇଅଛୁ ।
ଦୁଇଦଣ୍ଡ ରଥଚକ ପଶିବ ଭୂତଳେ
ଏଥିମଧ୍ୟେ ତାକୁ ଯେବେ ତୋଳିପାରେ ବଳେ
ତେବେ ଜିଣିବାକୁ କେହି ନୋହିବେ ସମର୍ଥ
ଏବେ ଏକଦଣ୍ଡ ଆସି ହେଲାଣି ଅଗତ ।
ଆଉ ଏକଦଣ୍ଡ ପରେ ଆକାଶେ ଉଠିବ
ପୁଣି ସେ ରଥରେ ବସି ସମର କରିବ ।
ତେତେବେଳେ କେଉଁ ବୀର ନୋହିବ ସମାନ
ଏପରେ ତାହାକୁ ତୁମ୍ଭେ କରିବ ନିଧନ ।
ଏମନ୍ତ ଶୁଣି ବିକଳ ହୋଇଲେ କିରୀଟି
ଗୁଣେ ବସାଇଲେ ଅର୍ଦ୍ଧଚନ୍ଦ୍ର ବାଣଗୋଟି ।
ସେ ଶରଘାତେ କର୍ଣ୍ଣର ଛିଡ଼ିଯାନ୍ତେ ମୁଣ୍ଡ
ଧରଣୀପରେ ପଡ଼ିଲା ଗିରିସମ ପିଣ୍ଡ ।
ପୁଣି ମୁଣ୍ଡେକ କଣ୍ଠରୁ ହେଲା ଉତପତି
ତକ୍ଷଣେ ଉଠି ଧଇଲା କରେ ବଜ୍ର ଶକ୍ତି ।
ପୁଣି ଅର୍ଜ୍ଜୁନ ବିନ୍ଧିଲେ ପାଶୁପତ ଶର
ଯେଉଁ ଶରେ ଦହିଥିଲେ ତ୍ରିପୁରକୁ ହର ।
ସେ ଶର କାଣ୍ଡେ ବସାଇ ଝାଣିଦ୍ୟନ୍ତେ ଛାଡ଼ି
ପୁଣି କର୍ଣ୍ଣ ମୁଣ୍ଡ କାଟି ଚଲେ ଯଡ଼େ ଛାଡ଼ି ।

ପୁଣି କର୍ଣ୍ଣର କନ୍ଧରୁ ମୁଣ୍ଡକ ଉଭବ
ପାର୍ଥ କହେ ଦେଖ ପ୍ରଭୁ ଏ ବଡ଼ ଦୁର୍ଲ୍ଲଭ ।
ସହଦେବଙ୍କୁ ଡକାଇ ପୁଚ୍ଛିଲେ ରମେଶ
ପୁଣି ମୁଣ୍ଡ ଉପୁଜଇ କେବଣ ଭବିଷ୍ୟ ।
କରଯୋଡ଼ି ଜଣାଇଲେ ମନ୍ତ୍ରୀ ଚୂଡ଼ାମଣି
ସୂର୍ଯ୍ୟଙ୍କ ନନ୍ଦନ ଯେଣୁ କର୍ଣ୍ଣ ବୀରମଣି ।
ଅଭେଦ କବଚ ଆଉ ଅମୃତ କୁଣ୍ଡଳ
ପୁଣି ଅଭେଦ ଚଉଁରୀ ଦେଲେ ଅଂଶୁମାଳ ।
ତାହା ଜାଣି ଆଖଣ୍ଡଳ ଦ୍ୱିଜବେଶ ଧରି
ଉଦ୍‌ଯୋଗ ପର୍ବେ ମାଗିଣ ଆଣିଦେଲେ ହରି
ଏ ସକଳ କଥା ଯହୁଁ ଜାଣିଲେ ଆଦିତ୍ୟ
ପୁତ୍ରର ନିମନ୍ତେ ତହୁଁ ହୋଇଲେ ଯବତ ।
ପୁଣି ପୁତ୍ରକୁ ଅମରେ ବସାଇବା ପାଇଁ
ମର୍କଟଲିଙ୍ଗ ହୃଦୟେ ରୋପିଦେଲେ ନେଇ ।
ଏ କଥାରେ ସ୍ୱର୍ଗବାସୀ କରିଲେ ସମ୍ମତ
ତେଣୁ କୌଣସି ଶରରେ ସେହି ନୁହେଁ ହତ
ଯେବେ ସେ ମର୍କଟଲିଙ୍ଗ ଯାଇପାରେ ପୋଡ଼ି
ତେବେ କର୍ଣ୍ଣଶିର ଯିବ ଏକାବେଳକେ ଛିଡ଼ି ।
ଶୁଣି ଶ୍ରୀକୃଷ୍ଣ ପୁଚ୍ଛିଲେ କେମନ୍ତ ଏ ହେବ
ମନ୍ତ୍ରୀ ପ୍ରକାଶ କରିଲେ ଶୁଣ ତେବେ ଦେବ
ପାଶୁପତ ନାଳଚନ୍ଦ୍ର ବାବଲ ଏ ତିନି
ଏକାବେଳକେ ବିନ୍ଧନ୍ତୁ ବୀର ଫାଲଗୁନି ।
ପାଶୁପତ ଯେ ନାଭିକି ବାବଲ ବକ୍ଷକୁ
ନାଳଚନ୍ଦ୍ରକୁ ପେଷନ୍ତୁ ତାହାର କନ୍ଧକୁ ।
ଏ ତିନିଶର ପଡ଼ିଲେ ତା ତିନି ସ୍ଥାନରେ
ତିନିଗଡ଼ ହୋଇ କର୍ଣ୍ଣ ପଡ଼ିବ ମହୀରେ ।
ଶୁଣି ଆନନ୍ଦ ହୋଇଲେ ବୀର ଧନଞ୍ଜୟ
ନାଳଚନ୍ଦ୍ରଙ୍କ ଉପରେ ଲଗାଇଲେ ଲୟ ।
ତହୁଁ ପାତାଳୁ ଅଇଲେ ସେ ବାଣ ବାହନ
ସେ ତିନିଙ୍କି ଗାଣ୍ଡିବରେ ବସାଇ ଅର୍ଜ୍ଜୁନ ।
ଆକର୍ଣ୍ଣ ଟଙ୍କାର ଗୁଣ ଦଅନ୍ତେ ସେ ଛାଡ଼ି
ଚଳିଲେ ସେ ତିନିବାଣ ହୋଇ ଘୋରରଡ଼ି ।
ପାଶୁପତ ପଶିଲା ସେ କର୍ଣ୍ଣର ନାଭିରେ
ବାବଲ ଶର ପଡ଼ିଲା ଯାଇଣ ଛାତିରେ ।
କୋଟି ସୂର୍ଯ୍ୟ ତେଜ ଧରି ନାଳଚନ୍ଦ୍ର ଗଲା
କର୍ଣ୍ଣ ଗଳା ବନ୍ଧ ନାଭି କାଟି ପକାଇଲା ।

ତିନିଖଣ୍ଡ ହୋଇବାରୁ ଛାଡ଼ିଲା ପରାଣ
ଆତ୍ମା ଚଳିଲା ଆକାଶେ ଜ୍ୟୋତି ପ୍ରକାଶିଣ ।
ଗୃହୁଁ ଗୃହୁଁ ଛାୟାପତି ଅଙ୍ଗେ ହେଲା ଲୀନ
ଏଥିଅନ୍ତେ ଯାହା ହେଲା ଶୁଣ ହେ ରାଜନ ।
ଭୀଷ୍ମଦେବ ଦଶଦିନ କରିଲେ ସମର
ଦ୍ରୋଣ ପାଞ୍ଚଦିନେ ଗଲେ ଶମନ ନଗର ।
ଅଢ଼ାଇ ଦିନ ସମର କରି ସୂର୍ଯ୍ୟସୁତ
ଧନଞ୍ଜୟଙ୍କ ହାତରେ ହୋଇଲେ ନିହତ ।
ପୌଷ ଚତୁର୍ଦ୍ଦଶୀ ଶନିବାର ବୃଦ୍ଧି ଯୋଗେ
କର୍ଣ୍ଣଶିର ଛେଦହେଲା ଦୁର୍ଯ୍ୟୋଧନ ଆଗେ ।
ଦିବା ଦୁଇ ପ୍ରହରରେ କର୍ଣ୍ଣ ହୋନ୍ତେ ନାଶ
ସେହିକ୍ଷଣି ଅନ୍ଧକାର ହେଲା ଦଶଦିଶ ।
ଆକାଶରେ ସୂର୍ଯ୍ୟଦେବ କଲେକ ରୋଦନ
ଆହା ପୁତ୍ର କେଣେ ଗଲୁ ମୋ ଜୀବ ଜୀବନ
ଆରେ ବୀରବର ବାବୁ ଧାର୍ମିକ ସୁମନ୍ତ
ଚଳିଲେ ତୋ ଭାର ସହି ନ ପାରଇ କ୍ଷିତି ।
ଆସ୍ତେ ଚଳିଲୁ ଯେବେ ତୁହି ଆରେ ବାପଧନ
ପୃଥିବୀ ନ ସହି ରକ୍ତ କରଇ ବମନ ।
ଧୀରେ ଚଳିବାର ପାଇଁ ତୋତେ ରେ କୁମର
କ୍ଷିତି ନିତି ଲାଞ୍ଚଦିଏ ସୁନା ଶଏଭାର ।
ସେ ସକଳ ସୁନାକୁ ତୁ କରିଦେଉ ଦାନ
ଦାନେଶ୍ୱର ମାନେଶ୍ୱର ଅଟୁରେ ନନ୍ଦନ ।
ଭାରତେ ଭାରାଇମଲ୍ଲି ତୋର ନାମ ପୁଅ
କବଚ କୁଣ୍ଡଳ ଦେଇ ତୁଠାଇଲୁ ଦେହ ।
ଶୋଚନା ନ କର ସବୁ ଦାନ ଦେଇ ବାପ
ଶେଷକୁ କେବଳ ଆଶ୍ରା କଲୁ କାଳସର୍ପ ।
ସେହି ପୁଣି କାଳି ତୋତେ ହୋଇଲା ବଇରୀ
ତାହାରି ଶାପରେ ଯିନା ହେଲୁ ଏତେପରି ।
ଏହିରୂପରେ ରୋଦନ କରନ୍ତି ତପନ
ପ୍ରବେଶ ହୋଇଲେ ଆସି ରାଜା ଦୁର୍ଯ୍ୟୋଧନ ।
କର୍ଣ୍ଣ ମୃତପିଣ୍ଡକୁ ଯେ ଆଲିଙ୍ଗନ କରି
କୋବାଇଲେ ହେ ମିତ୍ର କେଣେ ଗଲ ଛାଡ଼ିକରି
ଆହେ ବୀରବର କ୍ଷତ୍ରୀ ମିତ୍ର ଚୂଡ଼ାମଣି
ତୁମ୍ଭ ସମ ଦାନୀ ଆଉ ନ ଥିବେ ଧରଣୀ ।
କର୍ଣ୍ଣ ଦାନୀ ବୋଲି ପଡ଼େ ତିନିପୁରେ ହୁରି
ତାହାଶୁଣି କୃଷ୍ଣ ଗଲେ ଦ୍ୱିଜରୂପ ଧରି ।

ତାହାଙ୍କ ସନ୍ତୋଷ ପାଇଁ ମାରି ନିଜ ସୁତ
ଖଣ୍ଡ ଖଣ୍ଡ କଲ ଅସ୍ଥି ମାଂସକୁ ବିଭକ୍ତ ।
ପୁଣିହିଁ ସେ ମାଂସ ନେଇ କରିଲ ବ୍ୟଞ୍ଜନ
ଦେଖି ସନ୍ତୁଷ୍ଟ ହୋଇଲେ ପ୍ରଭୁ ଭଗବାନ ।
ଆଦର ତୁମ୍ଭ ପୁଅକୁ ଦେଲେ ସେ ବଞ୍ଚାଇ
ଦାତେଶ୍ୱର ନାମ ଦେଇଗଲେ ଗୋପ୍ୟ ହୋଇ
ହେ ମିତ୍ର ପ୍ରତିଜ୍ଞା କରି କହିଥିଲ ମୋତେ
ପାଣ୍ଡବ ମାରି ନିଃଶେଷ କରିବ ମୁକତେ ।
ତେଣୁ ତୁମ୍ଭର ବାହାକୁ ଆଶ୍ରା କରିଥିଲି
ଏବେ ରଣସିନ୍ଧୁରେ ମୁଁ ନିଷ୍ଟେଁ ବୁଡ଼ିମଲି ।
ସକଳ ଭରସା ମୋର ସରିଲା ଏଥର
ହେ ମିତ୍ର କେମନ୍ତେ ଆଉ ଏଥୁ ହେବ ପାର ।
ପୃଥିବୀ ସହି ନ ପାରେ ତୁମ୍ଭ ବେଗ ଗତି
ସେଥିପାଇଁ ଶଏଭାର ସୁନା ଦିଏ ନିତି ।
ହେ ମିତ୍ର କାହାକୁ ଆଉ କହିବି ବେଦନା
କ୍ଷଣକରେ ବୁଡ଼ିଗଲା ମୋର ରାଜ୍ୟ ସିନା ।
ଶରଣବତ୍ସଳ ତୁମ୍ଭେ ଆହେ ମିତ୍ରବର
ମହାଦାନୀ ବୋଲି ଖ୍ୟାତ ଅଟ ଚରାଚର
ଜଗତ ସୁନ୍ଦର ତୋର କର୍ଣ୍ଣ ନାମ ଗୋଟି
ଭାରତେ ଭାରେଇମଲି କଥା ଜଗତକୋଟି ।
କବଚ କୁଣ୍ଡଳ ଦାନଦେଇ ମଘବାନେ
ମହାନିଦ୍ରାରେ ଶୋଇଲ ତେବେ ରଣସ୍ଥାନେ ।
ତ୍ରୈଲୋକ୍ୟ ଜିଣିବାପାଇଁ କାହାର କ୍ଷମତା
ଅନ୍ୟାୟ ସମରେ ମଲ ମୋ କପାଳ କଥା ।
ଭୀଷ୍ମ ଦ୍ରୋଣ ମଲେ ଟିକେ ନୋହିଲା ମୋ ଖେଦ
ଜାଣଇ ମିତ୍ର ପ୍ରାଜନି ତାରିବେ ଆପଦ ।
ହେ ମିତ୍ର କେତେ ଗାଇବି ତୁମ୍ଭର ଯେ ଗୁଣ
ରାତିଦିନ ହେଲା ଏବେ ମୋର ଅଶରଣ ।
ଭାନୁମତୀ ସ୍ୱୟମ୍ବର କାଳେ କି ନ କଲ
ତିନିଉଣା ଲକ୍ଷେରାଜା ସମରେ ଜିଣିଲ ।
ଭାନୁମତୀ କନ୍ୟା ମୋତେ କରି ସମର୍ପଣ
ପୁଣି ଜୀବିତ କରିଲ ମୃତରାଜଗଣ ।
ଦେବତା ବ୍ରାହ୍ମଣେ ଭକ୍ତ ଥାଏ ସଦାକାଳେ
ନିଧନ ହୋଇଲ ମିତ୍ର ମୋ ମନ୍ଦ କପାଳେ ।
ଆହେ ମିତ୍ର ଉଠ ଉଠ କଥା ସେନାକର
ରଣଯଜ୍ଞ ଦେଇ ମୋତେ ଥରେ ପାରିକର ।

ଏବେ ଦଶଦିଗ ଦିଶେ ଅନ୍ଧାର କେବଳ
ତୁମ୍ଭ ବିହୁନେ ବୁଡ଼ିଲ ଧୃତରାଷ୍ଟ୍ର କୁଳ ।
ହେ ମିତ୍ର ଟିକେ ନ ସହ ମୋର ଅପମାନ
ଏବେ ଥରେ ଶୁଣୁନାହଁ କରିଇ ରୋଦନ ।
ଉଠ ଉଠ ମିତ୍ରବର ଆଉ ଯେ ନ ଶୁଅ
ଶଲ୍ୟ ସାଜିଲେଣି ରଥ ରଣ କରିଯାଅ ।
ଏହା କହି ମୃତପିଣ୍ଡ ଲଗାଇ ଗ୍ରୀବରେ
ଅତ୍ୟନ୍ତ ବିକଳ ହୋଇ ଗଡ଼ିଲେ ମହୀରେ ।
ପରଦୁଃଖ ଦେଖି ମିତ୍ର ନ ପାର ଯେ ସହି
ମୁଁ ଘୋର ଦୁଃଖେ ପଡ଼ିଛି ରହିଛ ନ ଚାହିଁ ।
ପୂର୍ଣ୍ଣିମୀ ଚନ୍ଦ୍ରକୁ ଜିଣି ଦିଶେ ତୋ ବଦନ
କିପରି ମଇଳି ତୁହି ହୋଇଲୁ ନିଧନ ।
ତିନି ଭୁବନ ଜିଣନ୍ତା କେ ନ ଥିଲେ ରଣେ
ଦଇବ ବଳେ ସେ ମିତ୍ର ମୋର ଗଲା କେଣେ
ଆହେ ମିତ୍ର କହିଥିଲ ମୋତେ ସତ୍ୟକରି
ନିଷ୍କଳଙ୍କ କରିଦେବ ପାଣ୍ଡବଙ୍କୁ ମାରି ।
ସେ ସତ୍ୟବାଣୀ କେବଣ ସ୍ଥାନରେ ରହିଲା
ସେ କଥା ମୋତେ ସ୍ୱପନ ପ୍ରାୟେ ଜଣାଗଲା ।
ଆଜଠାରୁ ଜାଣିଲି ମୁଁ ବିପଦେ ପଡ଼ିଲି
ଯେକାଳେ ତୁମ୍ଭର ବାହୁ ଆଶ୍ରାକୁ ଛାଡ଼ିଲି ।
କଠିକରେ ରାଜା ହେବେ ଏବେ ଯୁଧିଷ୍ଠିର
ଆଜଠାରୁ ସର୍ବଦୁଃଖ ଯିବ ଯେ ତାଙ୍କର ।
ହେ ମିତ୍ର ବିପଦବନ୍ଧୁ ଅନ୍ଧର ଲଉଡ଼ି
ରଣସମୁଦ୍ରେ ଭସାଇ ଗଲ ମୋତେ ଛାଡ଼ି ।
ନିରାଶ କରିବ ବୋଲି ଯେବେ ଜାଣିଥାନ୍ତି
ପାଣ୍ଡବଙ୍କ ସଙ୍ଗେ କାହିଁ ବିବାଦ ଲଗାନ୍ତି ।
ଏହିପରି ଶୋକକରି ଛାଡ଼ି ମୃତପିଣ୍ଡ
ଭୂମିରେ ପଡ଼ିଲେ ଯାଇ କୋଡ଼ିହୋଇ ମୁଣ୍ଡ
ଏମନ୍ତ ଯେ ଅର୍ଦ୍ଧରାତ୍ର ହୋଇଲା ଯାପନ
ଶଲ୍ୟଙ୍କୁ ବୋଇଲେ ମାମୁଁ ଶୁଣ ମୋ ବଚନ
ମୋର ପ୍ରାଣସଖା ଥିଲେ ତୁମ୍ଭର ରଥରେ
ତୁମ୍ଭପରି ବୀର ଥାଉଁ ମଲେ କି ପ୍ରକାରେ ।
ତୁମ୍ଭେ ଦେଖୁ ଦେଖୁ ମୋର ବୁଡ଼ିଲା ସଂସାର
କିଛି କରି ନ ପାରିଲ ତାର ପ୍ରତିକାର ।
ଶଲ୍ୟ ବୋଇଲେ ଶୁଣିମା ହେଉ କୁରୁରାୟ
ନିଷ୍ପୁତ୍ର ରହିକୁ କାର ଅଛଇ ଉପାୟ ।

ମୋହର କଥାକୁ ତୁମ୍ଭେ ଦୃଢ଼କରି ଜାଣ
ଯହିଁ କୃଷ୍ଣ ତହିଁ ଜୟ ଏଥେ ନାହିଁ ଆନ ।
ଏଣେ ପାଣ୍ଡବ ସଙ୍ଗେ ହନ୍ତେ ଦୃଷ୍ଟଚିତ୍ତ
ଉତ୍ସବ କଲେକ ଥାଟେ ଧର୍ମଙ୍କର ସୁତ ।
ଏହିଠାରେ କର୍ଣ୍ଣପର୍ବ ହୋଇଲାକ ଶେଷ
ସାଧୁଜନମାନେ ମୋର ନ ଧେନିବ ଦୋଷ ।
ଜୟ ନୀଳାଚଳ ନାଥ ଅଗତିତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ।
ଆହେ କଳାକରମୁଖ ପାଣ୍ଡବ ରକ୍ଷକ
ସେ ମୁଖ ଦର୍ଶନେ ପାପ ନ ରହଇ ପାଖ ।
ବଡ଼ଦେଉଳେ ବସିଛ ହୋଇ ବଜ୍ରସେହ୍ନା
ପତିତପାବନ ବୋଲି ଉଡ଼ାଉଛ ବାନା ।
ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ
ଅଜାମିଳଠାରୁ ମୁଁ କି ଅଟଇ ଅଧମ ।

ତାହାକୁ ତାରିଲ ପ୍ରଭୁ କଟାକ୍ଷ ମାତ୍ରରେ
ସେହିପରି ଦୃଷ୍ଟି ପଡ଼ୁ ମୋ ଉପରେ ଥରେ
ବାଟ ଖରଚକୁ ମୋର କିଛୁ ନାହିଁ ଧନ
ତୁମ୍ଭେହିଁ ସମ୍ବଳ ମୋର ରଙ୍କର ରତନ ।
ଅଣଗୁଣି ବେଳକୁ ଭରସା କେହି ନାହିଁ
ତୁମ୍ଭେ ଉଦ୍ଧାରନ୍ତା ଅଟ ପ୍ରଭୁ ଭାବଗ୍ରାହୀ ।
ଇଚ୍ଛାମୟ ହରି ତୁମ୍ଭ ମହିମା ଅସୀମ
ଦୂରଗତି କରିପାର ଭକ୍ତଙ୍କର ଭ୍ରମ ।
ତୁମ୍ଭର କୃପାରେ ପଙ୍ଗୁ ଲଙ୍ଘି ପାରେ ଗିରି
ତୁମ୍ଭର ବଳେ କପିଏ ଗଲେ ସିନ୍ଧୁ ତରି ।
ତୁମ୍ଭ ମହିମା ବର୍ଣ୍ଣନେ ଅଛି କି ଶକତି
ଶାରଳା ଦାସ ମାଗଇ ହେ ପ୍ରଭୁ ମୁକତି ।
ଜଗତ ଜନନୀ ମାତ ଶାରଳା ଚରଣେ
ଶରଣ ପଶି ଶାରଳା ଦାସ ମୁନି ଭଣେ ।

ଇତି ଶ୍ରୀମହାଭାରତ କର୍ଣ୍ଣପର୍ବ




ମୁଦ୍ରାକର—ଶ୍ରୀ କମଳଲୋଚନ ଗଡ଼ବଡ଼ୁ, ଶ୍ରୀ ରାଧାରମଣ ପ୍ରେସ, କଟକ—୧୯୮୭